ପ୍ରକାଶକ : ଶିଶୁସାହିତ୍ୟ ବିକାଶ
ବିନୋଦବିହାରୀ, କଟକ-୨

ମୁଦ୍ରକ : ଜଗନ୍ନାଥ ପ୍ରିଣ୍ଟର୍ସ, କଟକ-୧

ନୂତନ ସଂସ୍କରଣ : ୧୯୯୬, ମୂଲ୍ୟ : ଟ ୧୨/-

## ସୂଚୀପତ୍ର

# ସହିଦ-ଜୀବନୀ

ସେଦିନ ଥାଏ ଜାନୁଆରୀ ମାସର ୩୦ ତାରିଖ। ରଘୁନାଥପୁର ବିଦ୍ୟାଳୟର ଗୁରୁଜୀ ଶ୍ରେଣୀରେ ପିଲାମାନଙ୍କୁ ପାଠ ପଢ଼ାଉଥାନ୍ତି। ଠିକ୍ ଦିନ ଏଗାରଟା ସମୟ। ଗୁରୁଜୀ କହିଲେ – "ପିଲାମାନେ, ସମସ୍ତେ ଠିଆହୋଇ ଏବେ ଦୁଇ ମିନିଟ୍ ପାଇଁ ନୀରବରେ ପ୍ରାର୍ଥନା କର।"

ପିଲାମାନେ ପଚାରିଲେ – "କାହିଁକି ଗୁରୁଜୀ ?"

ଗୁରୁଜୀ କହିଲେ – "ଆଜି ଦିନଟି ହେଉଛି ଆମ ଦେଶର 'ସହିଦ ଦିବସ'। ଇଂରେଜଙ୍କ ହାତରୁ ଦେଶକୁ ସ୍ୱାଧୀନ କରିବାପାଇଁ ଆମେ ଲଢ଼େଇ କରିଥିଲେ। ଏଥିରେ ଆମ ଦେଶର ବହୁଲୋକ ଜୀବନ ଦେଇଛନ୍ତି। ସେମାନେ ଏ ଦେଶର ସହିଦ। ସେମାନଙ୍କୁ ମନେପକାଇ ସେମାନଙ୍କ ଗୁଣଗାନ କରିବା ଉଚିତ। ଏଇ ଦିନଟି ସାରାଭାରତରେ 'ସହିଦ ଦିବସ' ରୂପେ ପାଳନ କରାଯାଏ। ସ୍କୁଲ୍, କଲେଜ୍, ଅଫିସ୍, କଳକାରଖାନା ସବୁଠାରେ ଏହା ପାଳିତ ହୁଏ।"

ଦୁଇ ମିନିଟ୍ ନୀରବ ପ୍ରାର୍ଥନା ପରେ ସମସ୍ତେ ବସିଲେ। ଗୁରୁଜୀ କହିଲେ – "ଆମ ଦେଶର କେତେଜଣ ସହିଦଙ୍କ କଥା ତୁମକୁ କହିବି। ମନଦେଇ ଶୁଣ।" ସବୁପିଲା କହିଉଠିଲେ – "ହଁ ଗୁରୁଜୀ କହନ୍ତୁ। ଆମର ଶୁଣିବାକୁ ବହୁତ ମନ ହେଉଛି।"

ଗୁରୁଜୀ କହିଲେ – "ଆଜି ଆମ ଓଡ଼ିଶା ମୁଲକର କେତେଜଣ ସହିଦଙ୍କ କଥା କହିବି ଶୁଣ। ଆଉ ଦିନେ ଅନ୍ୟ ଅଞ୍ଚଳର ସହିଦମାନଙ୍କ କଥା ଶୁଣିବ।"

# ଗଜପତି ମୁକୁନ୍ଦଦେବ

ଗୁରୁଜୀ କହିଲେ – ତୁମେମାନେ ଇତିହାସ ବହିରୁ ପଢ଼ିଛ ଯେ, ଇଂରେଜମାନେ ବେପାର କରିବାକୁ ଭାରତକୁ ଆସିଥିଲେ। ବେପାର କରୁକରୁ ଆମ ଦେଶର ଖଣ୍ଡେ ଖଣ୍ଡେ ମୁଲକ କୌଶଳରେ ଅଧିକାର କରିନେଲେ। ଶେଷରେ ୧୮୦୩ ମସିହାରେ ସେମାନେ ଆମ ଓଡ଼ିଶା ଅଧିକାର କଲେ। ସେତେବେଳେ ଖୋରଧାର ରାଜା ଥିଲେ – ମୁକୁନ୍ଦ ଦେବ। ସେ ଥିଲେ ଠାକୁର ରାଜା। ତାଙ୍କୁ ଜଗନ୍ନାଥ ମହାପ୍ରଭୁଙ୍କର ଚଳନ୍ତି ପ୍ରତିମା ବୋଲି ଓଡ଼ିଆମାନେ ମାନୁଥିଲେ।

ଇଂରେଜ ସରକାର ମୁକୁନ୍ଦଦେବଙ୍କୁ କହିଲେ – ତୁମେ ଆମକୁ ବାର୍ଷିକ ଖଜଣା ଦେଇ ଆମର ଅଧୀନତା ମାନିନିଅ। ଦରକାର ବେଳେ ଆମକୁ ତୁମର ସୈନ୍ୟ ସାହାଯ୍ୟ ଦିଅ। ତା' ନହେଲେ ଆମେ ଖୋରଧା ମୁଲକକୁ ଅଧିକାର କରିନେଇ ତୁମକୁ ଗାଦିରୁ ତଡ଼ିଦେବୁ।

ଏହା ଶୁଣି ରାଜା ମୁକୁନ୍ଦଦେବ ତାଙ୍କର ମନ୍ତ୍ରୀ ଓ ପୁରୋହିତଙ୍କ ମତ ପଚାରିଲେ। ଇଂରେଜଙ୍କ ଗୋଲାମ୍ ହେବାକୁ ସେମାନେ ମନାକଲେ। ମୁକୁନ୍ଦଦେବ ଇଂରେଜ ସରକାରଙ୍କ କଥାରେ ରାଜିହେଲେ ନାହିଁ। ନିଜର ଓ ଓଡ଼ିଆ ଜାତିର ସ୍ୱାଧୀନତା ଇଂରେଜଙ୍କ ହାତକୁ ଦେଇଦେବାକୁ ମନାକଲେ।

ଏକଥା ଜାଣିବାପରେ ଇଂରେଜ ସରକାର ଖୋରଧା ଆକ୍ରମଣ କଲେ। ଖୋରଧାର କେତେକ ଅଞ୍ଚଳରେ ଜୋର୍‌କରି ଖଜଣା ଆଦାୟ କଲେ। ଖୋରଧା ନିକଟରେ ଅଛି ବରୁଣେଇ ପାହାଡ଼। ସେଇଠାରେ ସୈନ୍ୟବାହିନୀ ଠୁଳକରି ରାଜା ମୁକୁନ୍ଦଦେବ ଇଂରେଜଙ୍କ ସହ ଲଢ଼େଇ ପାଇଁ ସଜ ହେଲେ। ଇଂରେଜ ସୈନ୍ୟମାନେ

ଆମ ରାଜାଙ୍କ ସୈନ୍ୟମାନଙ୍କୁ ଚାରିଦିଗରୁ ଘେରି ରହିଥା'ନ୍ତି। ଏହା ଫଳରେ ଖୋରଧାର ସୈନ୍ୟମାନେ ବାହାରୁ ଖାଦ୍ୟ ପଦାର୍ଥ ପାଇପାରିଲେ ନାହିଁ। ପୁଣି ଇଂରେଜ ସୈନ୍ୟମାନଙ୍କ ହାତରେ ଆଧୁନିକ ଗୁଳିଗୋଳା ମହଜୁଦ୍ ଥାଏ। ଦୁଇ ପକ୍ଷ ଭିତରେ ଲଢ଼େଇ ଚାଲିଲା। ଆମର ଖାଦ୍ୟ ଓ ଅସ୍ତ୍ର ଅଭାବପଡ଼ିଲା। ରାଜା ଓ ତାଙ୍କର ସୈନ୍ୟମାନେ ଜିଣିବା ଆଶା ଦେଖିଲେ ନାହିଁ। ତେଣୁ ସେମାନେ କୌଶଳରେ ଜଙ୍ଗଲ ଭିତରକୁ ଖସି ଚାଲିଗଲେ। ଶତ୍ରୁ ନିକଟରୁ ହାରି ବନ୍ଦୀହେବା ଅପେକ୍ଷା ଖସି ଚାଲିଯିବାକୁ ସେମାନେ ଉଚିତ ମନେକରିଥିଲେ। ଇଂରେଜମାନେ ଖୋରଧା ମୁଲକ ଅଧିକାର କରିନେଲେ।

ରାଜଗାଦି ହରାଇ ଗଜପତି ମୁକୁନ୍ଦଦେବ ଜଙ୍ଗଲରେ ଦୀନହୀନ ଅବସ୍ଥାରେ ଲୁଚିରହିଲେ। ରାଜାଙ୍କୁ ଯିଏ ସାହାଯ୍ୟ କରିବ ସେ କଠିନ ଦଣ୍ଡ ପାଇବ ବୋଲି ଇଂରେଜ ସରକାର ଚାରିଆଡ଼େ ଘୋଷଣା କଲେ। ଇଂରେଜଙ୍କ ଭୟରେ ତେଣୁ କେହି ରାଜାଙ୍କୁ ସାହାଯ୍ୟ କଲେନାହିଁ। ତଥାପି ଇଂରେଜମାନେ ଗଜପତି ମୁକୁନ୍ଦଦେବଙ୍କୁ ଧରି ପାରିଲେ ନାହିଁ। ସେମାନେ ଘୋଷଣା କଲେ ଯେ, ଯଦି ମୁକୁନ୍ଦଦେବ ଧରାଦେବେ ତେବେ ତାଙ୍କୁ ରାଜ୍ୟ ଫେରାଇ ଦିଆଯିବ। ରାଜା ଦେଖିଲେ ଯେ ସୈନ୍ୟ ଓ ଅସ୍ତ୍ରବଳ ନଥାଇ ଲଢ଼ିହେବ ନାହିଁ। କେତେଦିନ ଆଉ କଷ୍ଟ ସହି ଜଙ୍ଗଲରେ ଲୁଚିରହି ଦିନ କାଟିଥାନ୍ତେ ? ଶେଷରେ ସେ ନିଜକୁ ଧରାଦେଲେ। ପ୍ରଥମେ ତାଙ୍କୁ କଟକର ବାରବାଟୀ ଦୁର୍ଗରେ ବନ୍ଦୀ ଭାବରେ ରଖାଗଲା। ପରେ ସେଠୁ ତାଙ୍କୁ ମେଦିନୀପୁର ଜେଲ୍‌କୁ ପଠାଇ ଦିଆଯାଇଥିଲା।

କିଛିଦିନ ପରେ ଇଂରେଜମାନେ ମୁକୁନ୍ଦଦେବଙ୍କୁ ପୁରୀକୁ ଆଣିଲେ। ସେ ରାଜନଅର ଭିତରେ ନଜରବନ୍ଦୀ ହୋଇ ରହିଲେ। ରାଜାଙ୍କୁ ଖଲାସ କରିବାକୁ ଦାବୀକରି ପ୍ରଜାମାନେ ଗୋଳମାଳ କଲେ। ପୁଣି ଚାରିଆଡ଼େ ପାଇକମାନେ ଏକଜୁଟ୍ ହେଲେ। ରାଜାଙ୍କ ପାଇଁ ଲଢ଼ିବାକୁ ସଜ ହେଲେ। ଏ ଖବର ଜାଣିପାରି ରାଜା

ମୁକୁନ୍ଦଦେବ ଦେଶକୁ ସ୍ୱାଧୀନ କରିବାପାଇଁ ପୁଣି ଚେଷ୍ଟାକଲେ। ଲଢ଼ିବା ପାଇଁ ଖଣ୍ଡାଧରି ସେ ବାହାରିପଡ଼ିଲେ। ପୁଣିଥରେ ଲଢ଼େଇ ହେଲା। ହେଲେ ପୁଣି ହାରିଯାଇ ରାଜା ବନ୍ଦୀହେଲେ। ତାଙ୍କର ପାଇକ ସୈନ୍ୟମାନେ ଏଣେତେଣେ ଖସି ଚାଲିଗଲେ ଓ ତାଙ୍କର ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ପଳାଇଯାଇ ବଣରେ ଲୁଚି ରହିଲେ।

ଏଣେ ଇଂରେଜ ଶାସକ ରାଜାଙ୍କୁ ଧରିନେଇ ବରାବାଟୀ ଦୁର୍ଗର ଏକ ଛୋଟ କୋଠରି ଭିତରେ ବନ୍ଦୀକରି ରଖିଲେ। ରାଜା ଅତି ଦୁଃଖ କଷ୍ଟରେ ବନ୍ଦୀ ଜୀବନ ବିତାଇଲେ। କିଛିକାଳ ପରେ ସେଇ ବନ୍ଦୀଶାଳାରେ ତାଙ୍କର ମୃତ୍ୟୁହେଲା। ଦେଶବାସୀ ଏ ଖବର ପାଇ ତାଙ୍କପାଇଁ ଅନେକ ଦିନ ଯାଏ ଲୁହ ଢାଳିଥିଲେ। ସେ ଚାଲିଗଲେ ସତ, ହେଲେ ସବୁଦିନ ପାଇଁ ସହିଦ ହୋଇ ରହିଲେ।

## ଜୟୀ ରାଜଗୁରୁ

ଗୁରୁଜୀ କହିଲେ – ପିଲାମାନେ, ତୁମକୁ କହିଚି ଯେ, ଇଂରେଜ ଶାସକ ଗଜପତି ମୁକୁନ୍ଦଦେବଙ୍କୁ ତାଙ୍କ ଅଧୀନରେ ରହିବାକୁ କହିଥିଲେ। ମାତ୍ର ରାଜା ସେଥିରେ ରାଜି ହୋଇନଥିଲେ। ସେତେବେଳକୁ ରାଜା ନାବାଳକ ଥିଲେ, ତେଣୁ ତାଙ୍କର କୁଳପୁରୋହିତ ଜୟୀ ରାଜଗୁରୁ ଦେଶର ଶାସନ ଚଳାଉଥିଲେ। ତାଙ୍କରି ଉପଦେଶ ମାନି ରାଜା ଇଂରେଜଙ୍କ ଅଧୀନ ହେବାକୁ ମନାକରିଥିଲେ। ଏଇ ଜୟୀ ରାଜଗୁରୁ କ'ଣ କହିଥିଲେ ଜାଣ ? ସେ କହିଥିଲେ – ''ଗୋଟାଏ ବିଦେଶୀ ଜାତି ଆଗରେ ଠାକୁର ରାଜା ମୁଣ୍ଡ ନୁଆଇଁବେ ନାହିଁ। ତାହାହେଲେ ଓଡ଼ିଆ ଜାତି ଓ ଜଗନ୍ନାଥ ମହାପ୍ରଭୁଙ୍କର ଗୌରବ

ରହିବ ନାହିଁ। ବରଂ ଦେହରେ ଶେଷ ରକ୍ତବିନ୍ଦୁ ଥିବାଯାଏ ଦେଶର ଓ ଜାତିର ଗୌରବ ରଖିବାପାଇଁ ଲଢ଼ିବା।''

ଜୟୀ ରାଜଗୁରୁଙ୍କର ଏଭଳି କଥା ଇଂରେଜ ଶାସକ ଶୁଣିଲେ। ସେ ରାଜଗୁରୁଙ୍କୁ ଆଦେଶ ଦେଲେ ତାଙ୍କୁ ଦେଖାକରିବାକୁ। ରାଜଗୁରୁ ଏ ଆଦେଶ ମାନିଲେ ନାହିଁ। ସେ ଜାଣନ୍ତି ଯେ ରକ୍ତଚାଉଳ ଚୋବାଇ ଅପେକ୍ଷା କରିଥିବା ଇଂରେଜମାନେ ତାଙ୍କୁ ପାଇଲେ କଠିନ ଦଣ୍ଡ ନଦେଇ ଛାଡ଼ିବେ ନାହିଁ। ତେଣୁ ସେ ଦେଖାକରିବାକୁ ମନାକରିଦେଲେ। ତା' ସଙ୍ଗେ ସଙ୍ଗେ ସେ ପାଇକମାନଙ୍କୁ ଲଢ଼େଇ ପାଇଁ ସଜବାଜ ହେବାକୁ ଆଦେଶ ଦେଲେ। ଇଂରେଜମାନେ ଖୋରଧା ଦଖଲ କରିବା ପାଇଁ ଲଢ଼େଇ ଆରମ୍ଭ କରିଦେଲେ।

ଓଡ଼ିଆ ପାଇକମାନେ ବି କମ୍ ବଳବାନ୍ ଓ ସାହସୀ ନୁହଁନ୍ତି! ଜୟୀ ରାଜଗୁରୁ ଏଇ ପାଇକମାନଙ୍କ ନେତା ହୋଇ ଲଢ଼ିବାକୁ ଆଗେଇ ଆସିଲେ। ପାଇକମାନେ ଢାଲ ତରବାରୀ ଧରି ଲଢୁଥାନ୍ତି। ଇଂରେଜ ସୈନ୍ୟମାନଙ୍କ ମଧ୍ୟରୁ ଅନେକଙ୍କୁ ସେମାନେ ମାରିପକାଇଲେ। କିଛିଦିନ ଧରି ଜୋର୍ ଲଢ଼େଇ ଚାଲିଲା। ସେମାନେ ଶତ୍ରୁର ଗୁଳିଗୁଳା, ତୋପ କମାଣ ଆଗରେ ଅଧିକଦିନ ଲଢ଼ିପାରିଲେନାହିଁ। ଶେଷରେ ପାଇକମାନେ ହାରିଲେ। ଯୁଦ୍ଧରେ ହାରିଯାଇ ଗଜପତି ମୁକୁନ୍ଦଦେବ ବନ୍ଦୀହେଲେ। ଇଂରେଜମାନେ ଖୋରଧା ଦଖଲକଲେ।

ହେଲେ ଅସଲ ବୀର ରାଜଗୁରୁଙ୍କୁ ଇଂରେଜମାନେ ଖୋଜି ପାଉନଥାନ୍ତି। ତେଣୁ ସେମାନେ ଘୋଷଣା କଲେ– ଯଦି ଜୟୀ ରାଜଗୁରୁ ହାଜର ହୋଇ ଦୋଷ ମାନିଯିବେ ତେବେ ତାଙ୍କୁ ବିନା ବିଚାରରେ ଛାଡ଼ିଦିଆଯିବ। ଏ ଘୋଷଣା ଶୁଣି ରାଜଗୁରୁ କହିଲେ– ''ଓଡ଼ିଆ ବୀର ଜାତି। ସେ ଲଢ଼େଇ କରି ପ୍ରାଣ ଦେଇ ଜାଣେ। ବିଦେଶୀ ବେପାରୀଙ୍କ ପାଖରେ ଭୁଲ ମାଗିବା ସେ ଜାଣେନା। ଗଜପତି ମୁକୁନ୍ଦଦେବଙ୍କୁ ଶୀଘ୍ର ମୁକ୍ତ କର।''

କିନ୍ତୁ କିଛି ଦିନ ପରେ ଇଂରେଜମାନେ କୌଶଳରେ ଜୟୀ ରାଜଗୁରୁଙ୍କୁ ବନ୍ଦୀକରିନେଲେ। ତାଙ୍କ ଅପରାଧର ବିଚାର କରିବା ଦରକାର ନଥିଲା– ସେ ତ ସେମାନଙ୍କର ଏକ ନମ୍ବର ଶତ୍ରୁ।



ତେଣୁ ସମସ୍ତଙ୍କ ଆଗରେ ତାଙ୍କୁ ଫାଶୀ ଦିଆଯିବ ବୋଲି ବିଚାର ହୋଇଗଲା। ତଥାପି ଜୟୀ ରାଜଗୁରୁ ଭୟକଲେ ନାହିଁ କି ଭୁଲ ମାଗିଲେ ନାହିଁ।

ଖୋରଧା ନିକଟରେ ଅଛି ବାଘିତୋଟା । ସେଠାରେ ଥିବା ଏକ ଝାମ୍ପୁରା ବରଗଛରେ ତାଙ୍କୁ ଫାଶୀ ଦେବାକୁ ଠିକ୍ କରାଗଲା । ପ୍ରଥମେ ଦୁଇଟି ବଡ଼ ଡାଳକୁ ଭିଡ଼ି ଏକାଠି ବାନ୍ଧି ଦିଆଗଲା । ରାଜଗୁରୁଙ୍କ ଦୁଇଗୋଡ଼କୁ ସେଇ ଦୁଇ ଡାଳରେ ବାନ୍ଧିଦିଆଗଲା । ତାଙ୍କ ମୁଣ୍ଡଟି ତଳକୁ ଝୁଲି ରହିଥାଏ । ତା'ପରେ ଡାଳ ଦୁଇଟିକୁ ଫିଟାଇ ଦିଆଗଲା । ବୀର ଜୟୀ ରାଜଗୁରୁଙ୍କ ଦେହ ଦୁଇଫାଳ ହୋଇଗଲା । ବୀର ରକ୍ତରେ ଦେଶର ମାଟି ଓଦାହେଲା । ଦେଖଣାହାରୀମାନେ ଏ କରୁଣ ଦୃଶ୍ୟ ଦେଖି କାନ୍ଦିଉଠିଥିଲେ ।

ଆଜି ବି ବାଘିତୋଟା ଅଛି, ଫାଶିଦିଆ ବର ବି ଅଛି । ଓଡ଼ିଆ ଜାତି କେବେ ଭୁଲି ପାରିବ ନାହିଁ ସେ ଅମର ସହିଦ ଜୟୀ ରାଜଗୁରୁଙ୍କୁ । ଇଏ ହେଲା ୧୮୦୫ ମସିହାର ଘଟଣା ।

# ବକ୍ସି ଜଗବନ୍ଧୁ

ଜଣେଛାତ୍ର ପଚାରିଲା – "ଗୁରୁଜୀ, ରାଜା ମୁକୁନ୍ଦଦେବ ବନ୍ଦୀହେଲେ, ଜୟୀ ରାଜଗୁରୁ ଫାଶୀ ପାଇଲେ । ସେନାପତି ବକ୍ସି ଜଗବନ୍ଧୁ ତ ଜଙ୍ଗଲରେ ଲୁଚିଥିଲେ – ତାଙ୍କର କ'ଣ ହେଲା ?

ଗୁରୁଜୀ କହିଲେ – ବକ୍ସି ଜଗବନ୍ଧୁ ବିଦ୍ୟାଧର ଥିଲେ ଗଜପତି ମୁକୁନ୍ଦଦେବଙ୍କର ପ୍ରଧାନ ସେନାପତି । ସେ ମହାନ୍ ବୀର ଥିଲେ । ସେ ଥିଲେ ଅତି ସାହସୀ ଓ ବଳବାନ୍ ଲୋକ । ସେ ମଧ ଥିଲେ ଅତି ଧୀରସ୍ଥିର ଓ ବିଚାରବନ୍ତ ଲୋକ । ସେ ଚାହୁଁଥିଲେ ସମସ୍ତେ ଶାନ୍ତିରେ ରହନ୍ତୁ । ଇଂରେଜମାନଙ୍କ ହୀନ ଚକ୍ରାନ୍ତପାଇଁ ସେ ତ ବିଦ୍ରୋହ କରିଥିଲେ । ରାଜାଙ୍କର ପ୍ରଧାନ ସେନାପତି ଭାବରେ ସେ ଥିଲେ ରୋଡ଼ଙ୍ଗଗଡ଼ର ମାଲିକ । ତା'ଛଡ଼ା ଆଉ କେତୋଟି ପ୍ରଗଣା ମଧ ରାଜା ତାଙ୍କୁ ଦେଇଥିଲେ ।

ଇଂରେଜମାନେ ଦେଖିଲେ ଯେ, ଓଡ଼ିଶାର ପାଇକ ସୈନ୍ୟମାନେ ଭାରି ସାହସୀ ଓ ବଳୁଆ। ସବୁଆଡ଼େ ସେମାନେ ନୂଆ ବିଦେଶୀ ସରକାରକୁ ବିରୋଧ କରୁଛନ୍ତି। ତେଣୁ ପ୍ରଥମେ ସେମାନଙ୍କର ମେଳି ଭାଙ୍ଗିଦେବା ଦରକାର। ଇଂରେଜମାନେ ଜୁଲମ୍‌କରି ଭୟ ଦେଖାଇ କେଉଁଠି ଖଜଣା ଆଦାୟ କଲେ ତ, କେଉଁଠି କାହାକୁ ଧରିନେଇ ଦଣ୍ଡଦେଲେ। କାହାକୁ ଫାଶୀ ଦେଲେ ତ, କାହାକୁ କଳାପାଣିକୁ ଦ୍ୱୀପାନ୍ତର ପଠାଇଲେ। ତଥାପି ପାଇକ ମେଳି ଭାଙ୍ଗୁ ନଥାଏ। ବରଂ ଇଂରେଜଙ୍କ ଅତ୍ୟାଚାରର ବିରୋଧକରି ସେମାନେ ଏକଜୁଟ ହେଉଥାନ୍ତି। ସ୍ଥାନେ ସ୍ଥାନେ ଇଂରେଜମାନଙ୍କର ମୁକାବିଲା କରୁଥାନ୍ତି।

ପାଇକମାନଙ୍କ ପ୍ରତି ହେଉଥିବା ଏ ଅତ୍ୟାଚାର ଦେଖି ପାଇକନେତା ଜଗବନ୍ଧୁ ଅସନ୍ତୁଷ୍ଟ ଥିଲେ। ସେତିକିବେଳେ ଇଂରେଜ ସରକାର ତାଙ୍କଠାରୁ ତାଙ୍କ ଜାଗିରି ଜମି ଛଡ଼ାଇନେଇ ରୋଡ଼ଙ୍ଗଗଡ଼କୁ ନିଲାମ କରିଦେଲେ। ତେଣୁ ସେ ଆଉ ନୀରବ ରହିଥାନ୍ତେ କିପରି ? ଚାରିଆଡ଼େ ଅସନ୍ତୋଷ ବ୍ୟାପିଛି। ପାଇକମାନଙ୍କର ମେଳି ପ୍ରବଳ ହୋଇସାରିଥାଏ। ପୁଣି ଗଜପତି ମୁକୁନ୍ଦଦେବ ଥା'ନ୍ତି ବନ୍ଦୀଶାଳାରେ। ଦେଶର ଏପରି ବିପଦ ଦେଖି ସେ ବିଦ୍ରୋହ କଲେ। ପାଇକମାନଙ୍କୁ ଏକଜୁଟ କରି ବିଦେଶୀ ଶାସକକୁ ହଟାଇଦେବାକୁ ପଣ କରି ସେ ଲଢ଼େଇକଲେ।

୧୮୧୭ ମସିହାର କଥା। ବକ୍‌ସିଙ୍କୁ ନେତାଭାବରେ ପାଇ ଖୋରଧାର ଚାରିଆଡ଼େ ପାଇକ ବିଦ୍ରୋହ ବ୍ୟାପିଗଲା। ସେତିକି ବେଳେ ଘୁମୁସରର ଆଦିବାସୀ କନ୍ଧମାନେ ମେଳିକରି ରଣପୁର ରାଜ୍ୟରେ ଗୋଳମାଳ କରୁଥାନ୍ତି। ଖୋରଧାର ପାଇକମାନେ ସେମାନଙ୍କ ସହିତ ମିଶିଗଲେ। ବିଦ୍ରୋହ ବଢ଼ି ଚାଲିଲା। ସେମାନେ କେତେକ ସରକାରୀ ଅଫିସ୍ ପୋଡ଼ିଦେଲେ। ଖଜଣାଖାନା ଲୁଟ୍ କଲେ। କେତେକ ଇଂରେଜ ଲୋକଙ୍କୁ ହତ୍ୟାକଲେ।

ପାଇକ ବିଦ୍ରୋହ କ୍ରମେ ଖୋରଧା, ରଣପୁର, ଘୁମୁସର ଅଞ୍ଚଳ ଟପି ଚାରିଆଡ଼େ ମାଡ଼ିଗଲା । ବିଭିନ୍ନ ସ୍ଥାନରେ ଲଢ଼େଇ ଲାଗିଗଲା । ଏଥିରେ ଅନେକ ଇଂରେଜ ସୈନ୍ୟ ମଲେ । ପରିସ୍ଥିତି ଅତି ଜଟିଳ ହେଲା । ସାରା ଓଡ଼ିଶାରେ ଇଂରେଜ ଶାସନ ଟଳମଳ ହୋଇଗଲା । ବକ୍ସିଙ୍କ ସାହସରେ ଓଡ଼ିଆ ପାଇକମାନେ ଜୀବନକୁ ପାଣି ଛଡ଼ାଇ ଲଢ଼େଇ କରୁଥାନ୍ତି । ଲଢ଼େଇ ଏଥର କେବଳ ପାଇକମାନେ କଲେନାହିଁ; ପୁରପଲ୍ଲୀ ସବୁଠି ଲୋକମାନେ ମାତି ଉଠିଲେ ।



ଏହି ବିଦ୍ରୋହକୁ ଦମନ କରିବା ପାଇଁ ଇଂରେଜ ସରକାର ନିଷ୍ଠୁର ବାଟ ଧରିଲେ । ଅନେକ ପାଇକ ଓ ସାଧାରଣ ଲୋକ ମଲେ । ଅନେକ ବିଦ୍ରୋହୀଙ୍କୁ ଧରି ଫାଶୀ ଦଣ୍ଡ ଦେଲେ । ଆଉ କେତେକଙ୍କୁ କଳାପାଣି ପଠାଇ ଦେଲେ । ଠାକୁର ରାଜାଙ୍କୁ ବନ୍ଦୀକରି ନେଇଗଲେ ।

ବହୁଦିନ ଧରି ଲଢ଼େଇ ଚାଲିଲା । ବହୁ ଦୁଃଖକଷ୍ଟ ଭୋଗି ପାଇକମାନଙ୍କ ମନୋବଳ କମିଆସିଲା । ଶେଷରେ ବିଦ୍ରୋହ ବନ୍ଦ ହୋଇଗଲା । ଏତିକିରେ ଇଂରେଜ ଶାସକ ଖୁସି ହୋଇପାରିନଥିଲେ । କାରଣ ଏଇ ବିଦ୍ରୋହର ପ୍ରଧାନ ସେନାପତି ବକ୍ସି ଜଗବନ୍ଧୁଙ୍କୁ

ସେମାନେ ଧରିପାରିନଥିଲେ ।

ପାଇକ ବିଦ୍ରୋହ ଭାଙ୍ଗି ପଡ଼ିବାରୁ ବକ୍ସି ଜଗବନ୍ଧୁ ଘୁମୁସର ପଳାଇଯାଇ ଘଞ୍ଚ ଜଙ୍ଗଲରେ ଲୁଚି ରହିଲେ । ଇଂରେଜମାନଙ୍କୁ ପୁଣି କିପରି ଆକ୍ରମଣ କରିବେ ସେଥିପାଇଁ ସେ ସୁଯୋଗକୁ ଅପେକ୍ଷାକରି ରହିଥାନ୍ତି । ସେତେବେଳକୁ ବକ୍ସି ପ୍ରତ୍ୟେକ ଓଡ଼ିଆ ପରିବାରରେ ଦେବତା ପରି ପୂଜା ପାଉଥାନ୍ତି । ତେଣୁ ସମସ୍ତେ ପ୍ରତିଦିନ ତାଙ୍କପାଇଁ ରୋଷେଇ କରି ରଖିଥାନ୍ତି— କାଳେ ବକ୍ସି ଭୋକ ଉପାସରେ ଘରକୁ ପଶିଆସି ଖାଇବାକୁ ମାଗିବେ ବୋଲି । ଓଡ଼ିଆ ଜାତି ତାଙ୍କୁ ଏପରି ଭାବରେ ପାଳିପୋଷି ଦୀର୍ଘ ଆଠବର୍ଷ ବଞ୍ଚାଇ ରଖିଥାଏ ।

ଇଂରେଜମାନେ ଯେତେ ବୁଦ୍ଧି ଖଟାଇଲେହେଁ ତାଙ୍କୁ ଧରିବାରେ ବିଫଳ ହେଲେ । ବକ୍ସିଙ୍କ ପରିବାରର ସମସ୍ତଙ୍କୁ ବନ୍ଦୀକରି ରଖାଗଲା । ତଥାପି ବକ୍ସି ଧରାଦେଲେ ନାହିଁ । ତେଣୁ ବାଧହୋଇ ତାଙ୍କ ପରିବାରକୁ ବନ୍ଦୀଶାଳାରୁ ଛାଡ଼ିଦିଆଯାଇଥିଲା ।

ଶେଷରେ ୧୮୨୫ ମସିହାରେ ବକ୍ସିଙ୍କ ସହିତ ଏକ ବୁଝାମଣା କରିବାକୁ ଇଂରେଜ ସରକାର ବାଧହେଲେ । ବକ୍ସି ଲୁଚିଥିବା ନୟାଗଡ଼ ଜଙ୍ଗଲରୁ ବାହାରିଆସି ଧରାଦେଲେ । ସେତେବେଳକୁ ସେ ଅତି ଦୁର୍ବଳ ହୋଇପଡ଼ିଥିଲେ । ଦେଶର ସ୍ୱାଧୀନତା ପାଇଁ ଲଢ଼ି ରାଜ୍ୟ ହରାଇଥିଲେ । ପରିବାର ଛାଡ଼ି ଜୀବନର ସବୁ ସୁଖ ଭୁଲିଥିଲେ । ଗହନ ବନରେ ଭୋକ ଉପାସରେ ଖରା ବର୍ଷା ସହି ବର୍ଷ ବର୍ଷ ରହିଲେ । ଦେଶ ଓ ଜାତିପାଇଁ ଏ କ'ଣ କମ୍ ତ୍ୟାଗ ?

୧୮୨୯ ମସିହାରେ ବକ୍ସି ଜଗବନ୍ଧୁ ଶେଷ ନିଶ୍ୱାସ ଛାଡ଼ିଲେ । ଦେଶପାଇଁ ତାଙ୍କର ସ୍ୱାର୍ଥତ୍ୟାଗ, କଷ୍ଟ ବରଣ ଓ ପାଇକ ବିଦ୍ରୋହରେ ତାଙ୍କର ବୀରତ୍ୱ ଇତିହାସରେ ଲେଖା ହୋଇ ରହିଲା ।

# ପିଣ୍ଡିକ ବାହୁବଳେନ୍ଦ୍ର

ଗୁରୁଜୀ ତା'ପରେ ପଚାରିଲେ– "ପିଲାମାନେ, ତୁମେ ଏଇ ବୀରମାନଙ୍କ କଥାଶୁଣି କ'ଣ ଭାବୁଛ ?"

ପିଲାମାନେ କହିଲେ– "ଗୁରୁଜୀ, ସେମାନଙ୍କ କାହାଣୀ ଶୁଣି ଆମେ ଓଡ଼ିଆ ବୋଲି ଆମ ମନରେ ଗର୍ବ ଆସୁଛି। ସେମାନେ ଆମ ଦେଶ ପାଇଁ ଲଢ଼ି ଜୀବନ ଦେଇଛନ୍ତି। ସେମାନଙ୍କୁ ପ୍ରଣାମ କରୁଛୁ।"

ଗୁରୁଜୀ କହିଲେ– "ଏବେ ତୁମକୁ ଆଉ ଗୋଟିଏ ଘଟଣା କହିବି। ଏଇ ଦେଶର ଲୋକ ମଧ୍ୟ ନିଜ ସ୍ୱାର୍ଥ ପାଇଁ ଅବିଶ୍ୱାସୀ କାମ କରିଛନ୍ତି। ଦେଶର ବୀର ସନ୍ତାନଙ୍କୁ ଶତ୍ରୁ ହାତରେ ଧରାଇଦେଇଛନ୍ତି। ସେକଥା ଜାଣିଲେ ତୁମେ ମନଦୁଃଖ କରିବ।

ବକ୍‌ସି ଜଗବନ୍ଧୁ ବିଦ୍ୟାଧରଙ୍କ ପରି ଆଉ ଜଣେ ବୀର ଥିଲେ ପିଣ୍ଡିକ ବାହୁବଳେନ୍ଦ୍ର। ସେ ମଧ୍ୟ ଥିଲେ ଖୋରଧା ଅଞ୍ଚଳର ଜଣେ ପାଇକ ବୀର। ବକ୍‌ସିଙ୍କ ସହିତ ମିଶି ସେ ପାଇକ ବିଦ୍ରୋହ ଚଳାଉଥିଲେ। ଅନେକ ସ୍ଥାନରେ ସେ ଇଂରେଜ ସୈନ୍ୟଙ୍କ ସହିତ ଲଢ଼େଇ କରିଥିଲେ ଓ ତାଙ୍କର ଯୁଦ୍ଧ କୌଶଳରେ ବହୁ ଇଂରେଜ ସୈନ୍ୟ ମରିଥିଲେ। ମାତ୍ର ଶେଷରେ ସେ ଶତ୍ରୁ ହାତରେ ଧରାପଡ଼ି ବନ୍ଦୀହେଲେ। ଇଂରେଜମାନେ ବାହୁବଳେନ୍ଦ୍ରଙ୍କୁ କଳାପାଣି ପଠାଇଦେଲେ।

ଜନ୍ମଭୂମିଠାରୁ ବହୁଦୂରରେ ରହି ସେ ରାଜ୍ୟକୁ ଇଂରେଜମାନଙ୍କ କବଳରୁ ମୁକୁଳାଇ ପାରିଥାନ୍ତେ ବା କିପରି ? ତେଣୁ ଦ୍ୱୀପାନ୍ତର ଦଣ୍ଡ ଭୋଗିବା ଅପେକ୍ଷା ଜୀବନ ହାରିଦେଲେ କ୍ଷତି କ'ଣ ? ଏଇ କଥା ବିଚାର କରି ବୀର ପିଣ୍ଡିକ ବାହୁବଳେନ୍ଦ୍ର ନିଜ ବୁଦ୍ଧି ବଳରେ ସୁଦୂର କଳାପାଣିରୁ ଖସି ପଳାଇ ଆସିଲେ। ସେ ଫେରି

ଆସିଲେ ଜନ୍ମମାଟିକୁ। ପୁଣି ଆରମ୍ଭ ହେଲା ବିଦ୍ରୋହ। ଏଥର କିନ୍ତୁ ସେ ସହଜରେ ଧରାପଡ଼ିଲେ ନାହିଁ।

ପିଣ୍ଡିକ ଦ୍ୱୀପାନ୍ତରରୁ ଖସିଆସି ଆତଙ୍କ ଖେଳାଇ ଦେଲେ ଇଂରେଜ ସରକାରଙ୍କ ମନରେ। ଇଂରେଜମାନେ ଘୋଷଣା କଲେ ଯେ– ଯିଏ ତାଙ୍କୁ ଧରାଇଦେବ, ସେ ଏକ ହଜାର ଟଙ୍କା ପୁରସ୍କାର ପାଇବ। ସେ ଯୁଗର ଏକ ହଜାର ଟଙ୍କା ଆଜି ହୁଏତ ଏକ ଲକ୍ଷ ଟଙ୍କା ସହ ସମାନ ହେବ। ପିଣ୍ଡିକ ଭିନ୍ନଭିନ୍ନ ସ୍ଥାନରେ ଲୁଚି ଛପି ରହୁଥାନ୍ତି। କେବଳ ତାଙ୍କର ଅତି ପ୍ରିୟ ଲୋକ ତାଙ୍କ ଖବର ରଖିଥାନ୍ତି। ତେଣୁ ତାଙ୍କୁ ଧରିପାରିବ କିଏ ?

ଖୋରଧା ମୁଲକର 'ମଳିପଡ଼ା' ଏକ ଅଞ୍ଚଳ। ତାହା ସେତେବେଳେ ଜଣେ ଜାଗିରଦାରଙ୍କ ଅଧୀନରେ ଥାଏ। ସେ ଜାଗିରିଦାର ଥିଲେ ପିଣ୍ଡିକ ବାହୁବଳେନ୍ଦ୍ରଙ୍କ ପିଲାଦିନର ସାଥୀ– ତାଙ୍କର ସଙ୍ଗାତ। ଦିନେ ସେ ଏକ ଭୋଜି କରି ତାଙ୍କର ବନ୍ଧୁମାନଙ୍କୁ ସେଠାକୁ ଡାକିଲେ। ପିଣ୍ଡିକଙ୍କୁ ମଧ ଅତି ଆଦରରେ ଡାକିଥିଲେ। ସଙ୍ଗାତଙ୍କ ଭୋଜିରେ ସେ ଯୋଗ ନଦେଲେ ବନ୍ଧୁ କ'ଣ କହିବେ ? ତାଙ୍କ ମନରେ ଦୁଃଖ ହେବ। ତେଣୁ ପିଣ୍ଡିକ ଲୁଚି ଲୁଚି ଯାଇ ବନ୍ଧୁଘରେ ପହଞ୍ଚିଲେ।

ଭୋଜି ଖାଇବା ପୂର୍ବରୁ ଜାଗିରିଦାର ଆଦର ଦେଖାଇ ଟୋଳାଏ ଭାଙ୍ଗ ଖାଇବାକୁ ଦେଲେ ତାଙ୍କର ସଙ୍ଗାତଙ୍କୁ। ପିଣ୍ଡିକ କିଛି ସନ୍ଦେହ ନକରି ବନ୍ଧୁ ଦେବା ଭାଙ୍ଗତକ ଖାଇଦେଇ ଭୋଜନରେ ବସିଲେ। ଭୋଜି ସରିଗଲା। ଯିଏ ଯୁଆଡ଼େ ଚାଲିଗଲେ, ହେଲେ ପିଣ୍ଡିକ ତାଙ୍କର ମୁଣ୍ଡକୁ ଚିପିଧରି ବସିରହିଲେ। କିଛି ସମୟ ଭିତରେ ସେ ଅଚେତ ହୋଇ ପଡ଼ିଗଲେ। ଅନେକ ସମୟ ପରେ ତାଙ୍କର ଚେତା ଫେରିଆସିଲା। ସେ ଦେଖିଲେ ସେତେବେଳକୁ ତାଙ୍କ ହାତରେ ହାତକଡ଼ା ଲାଗିଛି ଓ ତାଙ୍କ ଚାରିପାଖରେ ଗୋରା ସୈନ୍ୟ ଘେରି ରହିଛନ୍ତି। ପାଖରେ ଠିଆରହି ମୁରୁକି ମୁରୁକି ହସୁଚ଼ନ୍ତି ତାଙ୍କର ବିଶ୍ୱାସଘାତକ ସେଇ ସଙ୍ଗାତ।

ପିଣ୍ଡିକ ଏବେ ସବୁକଥା ଅନୁମାନ କରିପାରିଲେ। ତାଙ୍କୁ ଧରାଇଦେଇ ପୁରସ୍କାର ପାଇବା ଲୋଭରେ ସଙ୍ଗାତ ବିଶ୍ୱାସରେ ବିଷ ଦେଇଛି। ବଟା ଭାଙ୍ଗରେ ବିଷ ମିଶାଇ ତାଙ୍କୁ ଦିଆଯାଇଥିଲା।



ନିରୁପାୟ ପିଣ୍ଡିକ ବନ୍ଦୀହେଲେ। ଇଂରେଜର ଗୋଲାମ ଜାଗିରିଦାର ପୁରସ୍କାର ପାଇ ଖୁବ୍ ଆନନ୍ଦିତ ହୋଇଥିଲା ସେଦିନ।

ପିଣ୍ଡିକ ବାହୁବଳେନ୍ଦ୍ରଙ୍କୁ ଏଥର ମଧ୍ୟ ଦ୍ୱୀପାନ୍ତର ଦଣ୍ଡ ମିଳିଲା।

କିନ୍ତୁ ବେଶିଦିନ ସେ ଜେଲ୍‌ରେ ରହିପାରି ନଥିଲେ । ଦେଶପାଇଁ ଜୀବନ ଦେବାକୁ ଯିଏ ପ୍ରସ୍ତୁତ, ତାକୁ ବାନ୍ଧି ରଖିବ କିଏ ? ବାହୁରେ ତାଙ୍କର ବହୁତ ବଳ । ସେଇଥିପାଇଁ ତ ସେ ବାହୁବଳେନ୍ଦ୍ର ! ଦିନେ ସେ ଜେଲ୍ ପାଚେରୀ ଡେଇଁ ଖସି ପଳାଇ ଆସିବାକୁ ଚେଷ୍ଟାକରୁଥିଲେ । ସେତେବେଳେ ଜଗାଳି ପୋଲିସର ଗୁଳି ତାଙ୍କ ଦେହ ଭେଦ କଲା । ଜେଲ୍ କାନ୍ଥ ଉପରୁ ତଳକୁ ଖସିପଡ଼ିଲା ପିଣ୍ଡିକଙ୍କର ରକ୍ତ ଜୁଡୁବୁଡୁ ଦେହ । ଜନ୍ମଭୂମିର ଜୟଗାନ କରୁକରୁ ଆଖି ବୁଜିଦେଲେ ବିଦ୍ରୋହୀ ପାଇକବୀର ପିଣ୍ଡିକ ବାହୁବଳେନ୍ଦ୍ର । ଏହିପରିଭାବେ ଦେଶଦ୍ରୋହୀର ଚକ୍ରାନ୍ତ ଯୋଗୁଁ ଦେଶରୁ ହଜିଗଲା – ମଣିଷ ତ ନୁହେଁ ମଣିଟିଏ !

## କୃତ୍ତିବାସ ପାଟଶାଣୀ

ଗୁରୁଜୀ କହିଲେ – "ଆଉ ଜଣେ ଦେଶଭକ୍ତଙ୍କ କଥା ଶୁଣିବ ପିଲାମାନେ ?" ପିଲାମାନେ କହିଲେ – "ହଁ ଗୁରୁଜୀ, କହନ୍ତୁ । ଶୁଣିବୁ ।"

ଗୁରୁଜୀ କହିଲେ – ଏବେ ଯେଉଁ ବୀରଙ୍କ ବିଷୟ ମୁଁ କହିବି ତାଙ୍କ ନାଆଁ କୃତ୍ତିବାସ । ସେ ଥିଲେ ବାଣପୁର ଅଞ୍ଚଳର ଲୋକ । ଖୋରଧା ସହିତ ବାଣପୁରକୁ ତ ଇଂରେଜମାନେ ଦଖଲ କରିନେଲେ । ତା'ପରେ ଆରମ୍ଭ ହେଲା ଲୋକମାନଙ୍କ ଉପରେ ଅତ୍ୟାଚାର । ଇଂରେଜମାନେ ଖଜଣା ବଢ଼ାଇଦେଲେ । ଜିନିଷପତ୍ରସବୁର ମୂଲ୍ୟ ବଢ଼ିଗଲା । ଲୋକମାନେ ଆଗରୁ ନିଜ ଇଚ୍ଛାରେ ଲୁଣ ମାରିପାରୁଥିଲେ । ସରକାର ଲୁଣ ମାରିବା ବେଉସା ବନ୍ଦକରିଦେଲା । ଗରିବ ଲୋକମାନେ ଲୁଣମାରି ତାହା ବିକ୍ରିକରି କୁଟୁମ୍ବ ପୋଷୁଥିଲେ । ଇଂରେଜ ସରକାର ତାହା ବନ୍ଦକରି ଠିକାଦାରଙ୍କୁ କେବଳ ଏଥିପାଇଁ

ଅନୁମତି ଦେଲା । ଲୋକଙ୍କ ଅବସ୍ଥା ଦିନକୁ ଦିନ ଖରାପ ହେବାକୁ ଲାଗିଲା ।

ରାଜ୍ୟର ରାଜାଙ୍କୁ ଗାଦିରୁ ତଡ଼ିଦେଇଥିବାରୁ ଆଗରୁ ପ୍ରଜାମାନେ ସମସ୍ତେ ଅସୁଖୀ ଥିଲେ । ତା' ସାଙ୍ଗକୁ ମିଶିଲା ଇଂରେଜ ସରକାରର ଅତ୍ୟାଚାର । ଲୋକଙ୍କର ସ୍ୱାଧୀନ ମନ ପରାଧୀନ ହେବାକୁ ଘୃଣା କରୁଥିଲା । ଇଂରେଜମାନଙ୍କୁ କିପରି ତଡ଼ିଦିଆଯିବ ତାହା ବିଚାର କରିବାପାଇଁ ସଭା ବସିଲା । ସେଇ ସଭାରେ ବୀର ପଞ୍ଚୁନାୟକ ନିଜକୁ ରାଜା ଶରଣ ସିଂହ ବୋଲି ଘୋଷଣା କଲେ । ସେ ନିଜକୁ ବାଣପୁରର ସ୍ୱାଧୀନ ରାଜା ବୋଲି ଘୋଷଣା କଲେ । ବାଣପୁର ସ୍ୱାଧୀନ ହେଲା ଓ ଇଂରେଜ ଶାସନ ଉଠିଗଲା ବୋଲି ଗାଁ ଗାଁ ବୁଲି ପ୍ରଚାର କରାଗଲା ।

ଲୋକେ ମେଳିକରି ଚିଲିକା କୂଳରେ ଥିବା ସରକାରୀ ଲୁଣ ପେଣ୍ଠକୁ ନଷ୍ଟ କରିଦେଲେ । ସାହେବମାନଙ୍କୁ ଦେଖିଲେ ଆକ୍ରମଣ କଲେ । କେତେଜଣଙ୍କୁ ବି ମାରିଦେଲେ । ଏହା ଭାରତର ପ୍ରଥମ ଲୁଣମରା ଆନ୍ଦୋଳନ ।

ରାଜା ଶରଣ ସିଂହ ଓ ତାଙ୍କର ମନ୍ତ୍ରୀ କୃତ୍ତିବାସ ପାଟଶାଣୀଙ୍କ ଆଦେଶରେ ବାଣପୁର ଥାନା ଆକ୍ରମଣ କରାଗଲା । ଇଂରେଜ ସରକାରର ସିପାହୀମାନେ ଥାନା ଛାଡ଼ି କିଏ କୁଆଡ଼େ ପଳାଇଗଲେ । ତିନିଦିନ ପାଇଁ ରାଜା ଶରଣ ସିଂହ ବାଣପୁରକୁ ସ୍ୱାଧୀନ କରିପାରିଥିଲେ । ମେଳିଆ ପାଇକମାନଙ୍କର ଏ ବିଜୟ ସେତିକିରେ ବନ୍ଦ ରହିଲା ନାହିଁ । ଟାଙ୍ଗି ଥାନା ଆକ୍ରମଣ କରିବାପାଇଁ ବିଚାର କରାଗଲା । ସେ ଅଞ୍ଚଳର ମୁଖିଆ ଲୋକମାନେ ଏଥିରେ ମିଶିବାପାଇଁ କଥା ଦେଇଥିଲେ ।

ମାତ୍ର ଇଂରେଜ ଗୋଲାମ କେତେକ ଲୋକ ଇଂରେଜ ସରକାରଠୁ ଲାଞ୍ଚ ନେଇ ମେଳି ବିଷୟରେ ସବୁକଥା ଗୋପନରେ ଜଣାଇଦେଉଥିଲେ । ମେଳିଆମାନେ ଏକଥା ଜାଣିପାରିନଥିଲେ ।

ଟାଙ୍ଗୀଥାନା ଆକ୍ରମଣ କରିବାଦିନ ଇଂରେଜ ସିପାହୀମାନେ ଲୁଚିଛପି ବିଦ୍ରୋହୀମାନଙ୍କୁ ବନ୍ଦୀକରିନେଲେ। ତେଣୁ ମେଳି ଭାଙ୍ଗିଗଲା। ଥାନା ଅଧିକାର ହୋଇପାରିଲା ନାହିଁ। ହେଲେ ଦଳପତି ଶରଣ ସିଂହ ଓ କୃତ୍ତିବାସ ପାଟଶାଣୀ ଇଂରେଜ ସିପାହୀମାନଙ୍କ ଆଖିରେ ଧୂଳିଦେଇ ଖସିଗଲେ। ସେମାନଙ୍କୁ ଧରିବା ଇଂରେଜମାନଙ୍କ ପକ୍ଷେ ସହଜ ହୋଇନଥିଲା।

ପିଲାମାନେ କହିଲେ – ''ତା'ପରେ କ'ଣ ହେଲା ?''

ଗୁରୁଜୀ କହିଲେ – ସେନାପତି କୃତ୍ତିବାସ ପାଟଶାଣୀ ଲୁଚିକରି ରହିଲେ ଅନେକ ଦିନଯାଏ। ସେ ଠାକୁରାଣୀ ଉଗ୍ରତାରାଙ୍କୁ ବଡ଼ ଭକ୍ତି କରୁଥିଲେ। ଠାକୁରାଣୀଙ୍କୁ ଦର୍ଶନ କରିବାକୁ ପ୍ରତିଦିନ ରାତିରେ ସେ ଗୋପନରେ ଆସୁଥିଲେ। ଏ ଖବର ଜାଣିବାକୁ ପାଇ ତାଙ୍କ ଶଶୁର ନରେନ୍ଦ୍ର ସିଂହ ଦିନେ ରାତିରେ ତାଙ୍କୁ ଦେବୀ ମନ୍ଦିର ନିକଟରେ ନିରୋଳାରେ ଭେଟିଲେ। ତାଙ୍କ ଘରକୁ ଯିବାକୁ ଅନୁରୋଧ କଲେ। ପାଟଶାଣୀ ଶଶୁରଙ୍କ ଅନୁରୋଧ ଏଡ଼ିନପାରି ତାଙ୍କ ସହିତ ଗଲେ।

ପାଟଶାଣୀଙ୍କୁ ଶଶୁର ଘର ଖୁବ୍ ଆଦର ସମ୍ମାନ କଲେ। ମାତ୍ର ସେ ଖାଇବସିଥିବାବେଳେ ଇଂରେଜ ସିପାହୀମାନେ ତାଙ୍କୁ ଘେରିଯାଇ ବନ୍ଦୀକଲେ। ତାଙ୍କଠାରୁ ଢାଲ ତଲୱାର କାଢ଼ିନିଆଗଲା। ହାତକଡ଼ି ପିନ୍ଧାଇ ଦିଆଗଲା। ସେତେବେଳେ ସେଠୁ ଖସି ଚାଲିଯିବାର ଉପାୟ କୃତ୍ତିବାସଙ୍କର ନଥିଲା।

ଏଇ ଦେଶଦ୍ରୋହୀ ନରେନ୍ଦ୍ର ସିଂହ ଟାଙ୍ଗୀ ଥାନା ଆକ୍ରମଣ ବେଳେ ଭିତିରି କଥା ଇଂରେଜମାନଙ୍କୁ ଜଣାଇଦେଇ ପୁରସ୍କାର ପାଇଥିଲେ। ଏଥର ନିଜର ଜ୍ୱାଇଁଙ୍କୁ ଧରାଇଦେଇ ବହୁ ଭୂମି ଜାଗିରି ପାଇଲେ। ଇଂରେଜ ସରକାର କୃତ୍ତିବାସ ପାଟଶାଣୀଙ୍କୁ ଦ୍ୱୀପାନ୍ତର (କଳାପାଣି) ପଠାଇଦେଲେ। ପାଇକ ସର୍ଦ୍ଦାର ଦେଶଭକ୍ତ କୃତ୍ତିବାସ ଜନ୍ମଭୂମିଠାରୁ ବହୁଦୂରରେ ବନ୍ଦୀହୋଇ ରହିଲେ।

କୃତ୍ତିବାସ ଉଗ୍ରତାରାଙ୍କୁ ପୂଜାକରି କେତେକ ତନ୍ତ୍ର ମନ୍ତ୍ର ସାଧନା କରିଥିଲେ । ଥରେ ସେଠାର ଗୋରା ଶାସକଙ୍କ ସ୍ତ୍ରୀଙ୍କର ରୋଗ ମନ୍ତ୍ରଦ୍ୱାରା ସେ ଭଲକରିଦେଲେ । ତେଣୁ ଶାସକ ଖୁସିହୋଇ କହିଲେ,



"ଯଦି ତୁମେ କହିବ, ମୁଁ ତୁମକୁ ଜେଲଖାନାରୁ ମୁକୁଳାଇ ଦେବି । ମୁଁ ତୁମ ପାଖରେ ଋଣୀ ।"

ପାଟଶାଣୀ କହିଥିଲେ– "ମୁଁ ସବୁଠୁ ବେଶୀ ଖୁସି ହେବି ଯଦି ମୋ ବିଶ୍ୱାସଘାତକ ଶଶୁର ନରେନ୍ଦ୍ରର କଟାମୁଣ୍ଡଟା ଆଣି

ମୋତେ ଦେଇ ପାରିବ। ମୋର ମୁକ୍ତିଠାରୁ ଗୋଟାଏ ଦେଶଦ୍ରୋହୀର ମରଣ ମତେ ଅଧିକ ଆନନ୍ଦ ଦେବ।''

ଏକଥା ଶୁଣି ଓ ପାଟଶାଣୀଙ୍କର ଦେଶଭକ୍ତିର ପରିଚୟ ପାଇ ସାହେବ ଚମକି ଉଠିଥିଲେ। ପାଟଶାଣୀ ସେଠାରେ ଆଜୀବନ ବନ୍ଦୀହୋଇ ରହିଲେ। ଏହିପରି ଭାବେ ଏ ମାଟିର ଆଉଜଣେ ବୀର ସନ୍ତାନ ସହିଦ ହୋଇଥିଲେ।

# ପଞ୍ଚୁ ନାୟକ

ପିଲାମାନେ କହିଲେ– ''ଗୁରୁଜୀ, ପାଟଶାଣୀ ତ କଳାପାଣିରେ ବନ୍ଦୀହୋଇ ରହିଲେ। ନୂଆ ରାଜା ଶରଣ ସିଂହ କ'ଣ କଲେ, ଦୟାକରି କୁହନ୍ତୁ।''

ଗୁରୁଜୀ କହିଲେ– ସେକଥା କହୁଛି ଶୁଣ। ଶରଣ ସିଂହ ରାଜାହୋଇ ବାଣପୁରକୁ ସ୍ୱାଧୀନ ଘୋଷଣା କଲେ। ସେ ବାଣପୁରରୁ ତିନିଦିନ ପାଇଁ ଇଂରେଜ ଶାସନକୁ ହଟାଇ ଦେଇଥିଲେ। ଏଇ ଖବର ଶୁଣି ସବୁଆଡ଼େ ଲୋକମାନେ ଖୁବ୍ ଖୁସି ହୋଇଥିଲେ, ଆଶ୍ଚର୍ଯ୍ୟ ମଧ୍ୟ ହୋଇଥିଲେ। ପାଇକ ସର୍ଦ୍ଦାର ପଞ୍ଚୁ ନାୟକଙ୍କୁ ଲୋକମାନେ ନେତା ବାଛିଥିଲେ ଇଂରେଜମାନଙ୍କ ସହିତ ଲଢ଼ିବା ପାଇଁ। ସେ ହେଲେ ରାଜା ଶରଣ ସିଂହ। ସେ ଓ ତାଙ୍କର ସେନାପତି କୃତ୍ତିବାସ ପାଟଶାଣୀ ଚିଲିକା କୂଳରେ ଥିବା ଇଂରେଜ ଠିକାଦାରର ଲୁଣପେଣ୍ଠକୁ ଭାଙ୍ଗିଦେଲେ। ଇଂରେଜମାନଙ୍କୁ ତଡ଼ିଦେଲେ। ସେମାନେ ବାଣପୁର ଥାନାକୁ ପୋଡ଼ିଦେଲେ। ଇଂରେଜ ସିପାହୀମାନେ ଜୀବନନେଇ ପଳାଇଗଲେ। ମେଳିଆମାନେ କେତେକ ଇଂରେଜ ଲୋକଙ୍କୁ ମାରିପକାଇଥିଲେ। ତିନିଦିନ ପାଇଁ ବାଣପୁରର ଶାସନ ରହିଥିଲା ରାଜା ଶରଣ ସିଂହଙ୍କ ହାତରେ।

କେତେକ ଦେଶଦ୍ରୋହୀ ଲୋକ ଇଂରେଜମାନଙ୍କୁ ପାଇକ ମାନଙ୍କର ଭିତିରି ଖବର ଜଣାଇଦେଲେ। ଇଂରେଜମାନେ କୌଶଳରେ ବହୁଲୋକଙ୍କୁ ଧରିନେଲେ। ମେଳି ଭାଙ୍ଗିଗଲା। ସିପାହୀମାନେ ପାଇକ ବୀରମାନଙ୍କୁ ବନ୍ଦୀକଲେ। ରାଜା ଶରଣ ସିଂହ ପ୍ରଥମେ ଧରାନପଡ଼ି ଲୁଚି ଯାଇଥିଲେ। ବହୁଦିନ ଧରି ସେ ନୟାଗଡ଼ର ଜଙ୍ଗଲ ଭିତରେ ଲୁଚିଛପି ରହିଥିଲେ। ଶେଷରେ ବହୁ କଷ୍ଟରେ ଇଂରେଜମାନେ ତାଙ୍କୁ ଧରିନେଲେ।

ଇଂରେଜ ସରକାର ଜାଣିପାରିଥିଲା ଶରଣ ସିଂହ କିଭଳି ବୀର ଓ ସାହସୀ। ତେଣୁ ତାଙ୍କୁ ଜୀବନରେ ନମାରି ଛାଡ଼ିଦେଇ ଥାଆନ୍ତେ ବା କିପରି? ପାଇକ ସର୍ଦ୍ଦାର ପଞ୍ଚୁନାୟକଙ୍କୁ ସେମାନେ ଫାଶୀ ଦଣ୍ଡ ଦେଲେ। ଜନ୍ମଭୂମି ପାଇଁ ସେ ସହିଦ ହେଲେ। ତାଙ୍କର ନାମ ଇତିହାସରେ ଅମର ହେଲା।

## ସୁରେନ୍ଦ୍ର ସାଏ

ପିଲାମାନେ ପଚାରିଲେ – "ଗୁରୁଜୀ, ମୁକୁନ୍ଦଦେବଙ୍କ ପରି ଆମ ଓଡ଼ିଶାର ଆଉ କେହି ରାଜା ଦେଶପାଇଁ ଇଂରେଜଙ୍କ ସଙ୍ଗେ ଲଢ଼େଇ କରିଥିଲେ ନା ସବୁ ଜମିଦାର ଓ ରାଜା ଇଂରେଜମାନଙ୍କ ଶାସନକୁ ଡରରେ ମାନିନେଇଥିଲେ?"

ଗୁରୁଜୀ କହିଲେ... "ନା, ସମସ୍ତେ ଏମିତି ମାନିନେଇନଥିଲେ। ସେ ସମୟରେ ସମ୍ବଲପୁର ଏକ ସ୍ୱାଧୀନ ରାଜ୍ୟ ଥିଲା। ସେଇ ମୁଲକର ଜଣେ ବୀର ଥିଲେ ସୁରେନ୍ଦ୍ରସାଏ। ସେ ଶତ୍ରୁ ନିକଟରେ ମୁଣ୍ଡ ନୁଆଇଁ ନଥିଲେ ମରିବାଯାଏଁ ଇଂରେଜଙ୍କ ସହ ଲଢ଼େଇ କରିଥିଲେ।"

ପିଲାମାନେ କହିଲେ – "ଏଇ ସୁରେନ୍ଦ୍ରସାଏଙ୍କ ବିଷୟରେ

କହନ୍ତୁ ଗୁରୁଜୀ।''

ଗୁରୁଜୀ କହିଲେ— ସୁରେନ୍ଦ୍ରସାଏ ୧୮୦୯ ମସିହାରେ ଜନ୍ମ ହୋଇଥିଲେ ସମ୍ବଲପୁର ଅଞ୍ଚଳର ଖିଣ୍ଡାଗ୍ରାମରେ। ତାଙ୍କୁ ଯେତେବେଳ ମାତ୍ର ୧୮ ବର୍ଷ ବୟସ, ସେତେବେଳେ ଗୋଟିଏ ଘଟଣା ଘଟିଲା। ସମ୍ବଲପୁରର ରାଜା ମରିଗଲେ। ସେତେବେଳକୁ ଇଂରେଜମାନେ ଓଡ଼ିଶାର ମାଲିକ ହୋଇସାରିଥିଲେ। ରାଜାଙ୍କ ପରେ ଇଂରେଜ ସରକାର ତାଙ୍କର ବିଧବା ସ୍ତ୍ରୀଙ୍କୁ ଶାସନ ଭାର ଦେଲେ। ରାଣୀଙ୍କ ହାତରେ ଶାସନ ଠିକ୍ ଭାବରେ ଚଳିଲାନାହିଁ। ତେଣୁ ପ୍ରଜାଙ୍କ ମନରେ ଅସନ୍ତୋଷ ଦେଖାଦେଲା। ଏପରି ପରିସ୍ଥିତି ଦେଖି ସରକାର ରାଣୀଙ୍କୁ ଗାଦିରୁ ହଟାଇଦେଲେ।

ତାଙ୍କ ବଦଳରେ ବଣାଇଗଡ଼ରେ ହଳଦୀବେପାର କରୁଥିବା ନାରାୟଣ ସିଂହ ରାଜ୍ୟର ରାଜାହେଲେ। ସେ ଥିଲେ ଅପାରଗ ଓ ବୁଢ଼ାଲୋକ। ତା'ଛଡ଼ା, ତାଙ୍କୁ ଗାଦିରେ ବସାଇବା ପାଇଁ ପ୍ରଜାଙ୍କର ଇଚ୍ଛା ନଥିଲା। ଇଂରେଜମାନଙ୍କର ଏଭଳି ଭୁଲ୍ ବିଚାର ପାଇଁ ପ୍ରଜାମାନେ ବିରକ୍ତ ହୋଇଉଠିଥାନ୍ତି। ଯୁବକ ସୁରେନ୍ଦ୍ରସାଏ ଇଂରେଜମାନଙ୍କୁ ରାଜ୍ୟରୁ ନିକାଲି ଦେବାପାଇଁ ପ୍ରସ୍ତୁତ ହୋଇଗଲେ। ପ୍ରକୃତରେ ସୁରେନ୍ଦ୍ରସାଏ ରାଜଗାଦି ପାଇବା କଥା। ତାହା ନହେବାରୁ ସେ ଅଧିକ ବିରକ୍ତ ହୋଇପଡ଼ିଥିଲେ। ତେଣୁ ଲଢ଼େଇ କରି ଇଂରେଜ ସରକାରକୁ ହଟାଇଦେଇ ରାଜ୍ୟ ଦଖଲ କରିବାକୁ ସେ ବିଚାରକଲେ। ଅନେକ ଜମିଦାର, ଧନୀଲୋକ ଓ ରାଜ୍ୟର ସ୍ୱାଧୀନତା ଚାହୁଁଥିବା ଲୋକ ସୁରେନ୍ଦ୍ରସାଏଙ୍କୁ ସହଯୋଗ ଦେଲେ। ତେଣୁ ସମ୍ବଲପୁରରେ ବିଦ୍ରୋହର ନିଆଁ ଜଳି ଉଠିଲା।

ରାମପୁରର ଜମିଦାର ଇଂରେଜ ବୋଲକରା ନାରାୟଣ ସିଂହଙ୍କୁ ସମର୍ଥନ କରୁଥିଲେ। ତେଣୁ ସୁରେନ୍ଦ୍ରସାଏ ଆଗ ରାମପୁର ଆକ୍ରମଣ କଲେ। ଏଇ ଲଢ଼େଇରେ ରାମପୁର ଜମିଦାର ହାରିଗଲେ। ତାଙ୍କର ପରିବାରର ଲୋକେ ଘରଛାଡ଼ି ବଣରେ ଲୁଚିରହିଲେ।

ଏ ବିଜୟରେ ସୁରେନ୍ଦ୍ରସାଏଙ୍କର ମନର ବଳ ବଢ଼ିଗଲା। ସେ ଇଂରେଜମାନଙ୍କ ସହିତ ସିଧାସଳଖ ଲଢ଼େଇ କଲେ ବୁଢ଼ାରାଜା ପାହାଡ଼ର ପାଦଦେଶରେ। ମୁହାଁମୁହିଁ ଲଢ଼େଇରେ ଇଂରେଜମାନଙ୍କୁ ପାରିବା ସହଜ ହେଲାନାହିଁ, କାରଣ ସେମାନଙ୍କ ହାତରେ ଥିଲା ବନ୍ଧୁକ, ତୋପ, ଗୁଳିଗୋଳା। ଖଣ୍ଡା ତଲୁଆରରେ ତାକୁ ରୋକି ହୁଅନ୍ତା କିପରି ? ଏ ଯୁଦ୍ଧରେ ବହୁତ ଗୋରା ସିପାହୀଙ୍କୁ ମାରିପାରିଲେ ବି ଶେଷରେ ହାରିଯାଇ ବନ୍ଦୀହେଲେ ସୁରେନ୍ଦ୍ରସାଏ ଓ ତାଙ୍କ ସହିତ ତାଙ୍କ ସାନଭାଇ ଓ ଖୁଡୁତା। ଏ ସମସ୍ତଙ୍କୁ ବିହାରର ହଜାରିବାଗ ଜେଲ୍‌ରେ ବନ୍ଦୀକରି ରଖାଗଲା। ମହାନ୍ ବୀର ସୁରେନ୍ଦ୍ରସାଏ ଦୀର୍ଘ ୧୭ ବର୍ଷକାଳ ସେଇ ଜେଲ୍‌ରେ ବନ୍ଦୀ ରହିଲେ।

୧୮୫୭ ମସିହାରେ ସାରା ଭାରତରେ ଇଂରେଜମାନଙ୍କ ବିରୁଦ୍ଧରେ ସିପାହି ବିଦ୍ରୋହ ଆରମ୍ଭ ହୋଇଗଲା। ଦଳେ ବିଦ୍ରୋହୀ ହଜାରିବାଗ ଜେଲ୍ ଆକ୍ରମଣ କରି ବନ୍ଦୀମାନଙ୍କୁ ମୁକ୍ତ କରିଦେଲେ। ଏଇ ସୁଯୋଗରେ ବୀର ସୁରେନ୍ଦ୍ରସାଏ ଜେଲ୍‌ରୁ ଖସିଆସିଲେ। ପୁଣି ଲଢ଼େଇ ପାଇଁ ସଜବାଜ ହେଲେ। ଭାରତ ସାରା ସିପାହିମାନଙ୍କର ବିଦ୍ରୋହ ଘନେଇ ଉଠିଥାଏ। ଥୟ ହୋଇ ରହିପାରିଲେ ନାହିଁ ବୀର ସୁରେନ୍ଦ୍ରସାଏ। ସେ ମଧ୍ୟ ଲଢ଼େଇ ପାଇଁ ବାହାରିପଡ଼ିଲେ।

ସୁରେନ୍ଦ୍ରସାଏଙ୍କ କୌଶଳ ଓ ବୀରତ୍ୱରେ ଇଂରେଜମାନେ ଅଥୟ ହୋଇପଡ଼ିଲେ। ଇଂରେଜ ହାକିମମାନେ ସୁରେନ୍ଦ୍ରଙ୍କୁ ଧରିବା ପାଇଁ ନାନା ଉପାୟ ଚିନ୍ତାକଲେ।

ସୁରେନ୍ଦ୍ରସାଏ ଓ ତାଙ୍କ ସେନା 'ବାରପାହାଡ଼' ଉପରେ ଘାଟି ତିଆରି କରି ରହିଥାନ୍ତି। ଇଂରେଜ ସୈନ୍ୟ ଯେଉଁ ରାସ୍ତାରେ ଯା' ଆସ କରୁଥିଲେ ସେ ସବୁ ରାସ୍ତାକୁ ବିଦ୍ରୋହୀମାନେ ବନ୍ଦକରିଦେଲେ। ଫଳରେ ଇଂରେଜ ସୈନ୍ୟମାନଙ୍କ ଯିବା ଆସିବା କରିବାରେ ଓ ଖାଦ୍ୟ ପଦାର୍ଥ ଆଣିବାରେ ଅସୁବିଧାରେ ପଡ଼ିଲେ।

ଇଂରେଜଙ୍କ ସହ ଏଇ ଦ୍ୱିତୀୟଥର ଲଢ଼େଇରେ ସୁରେନ୍ଦ୍ରସାଏଙ୍କ ସହିତ ଯୋଗଦେଇଥିଲେ ଲତୁଆ ଆଦିବାସୀମାନେ। ଲୋକମାନେ ହଜାର ହଜାର ସଂଖ୍ୟାରେ ତାଙ୍କ ସହିତ ମିଶିଲେ। ଇଂରେଜମାନଙ୍କୁ ହଟାଇବା ସମସ୍ତଙ୍କର ଲକ୍ଷ୍ୟ। ସାତବର୍ଷଧରି ଏଇ ଲଢ଼େଇ ଲାଗିରହିଲା। ଇଂରେଜମାନଙ୍କର ବହୁ ବଡ଼ ହାକିମ, ଡାକ୍ତର ଓ ସିପାହିଙ୍କୁ ସୁରେନ୍ଦ୍ରଙ୍କ ବିଦ୍ରୋହୀମାନେ ମାରି ପକାଇଥିଲେ।



ଇଂରେଜମାନେ ମଧ୍ୟ ସୁରେନ୍ଦ୍ରସାଏଙ୍କର କେତେକ ଅତି ବିଶ୍ୱାସୀ ଓ ବୀର ସେନାପତିଙ୍କୁ ଧରିନେଇଥିଲେ। ସେମାନଙ୍କ ଭିତରୁ ବୀର ମାଧୋ ସିଂ ଓ ବିପ୍ଳବୀ ମଧୁ ଗଉନ୍ତିଆଙ୍କୁ ଫାଶୀଦଣ୍ଡ ଦେଇଥିଲେ।

ସୁରେନ୍ଦ୍ରଙ୍କର ଘାଟି ପର୍ଯ୍ୟନ୍ତ ଯିବାପାଇଁ ଇଂରେଜ ସୈନ୍ୟମାନେ କେବେହେଲେ ସାହସ କରିନଥିଲେ। ସିଂହପରି ସାହାସୀ ସୁରେନ୍ଦ୍ରସାଏ ଜଙ୍ଗଲରେ ଲୁଚିରହି ଇଂରେଜମାନଙ୍କୁ ଡରାଇ ଥରାଇ ଲଢ଼େଇ

ଚଳାଇ ଥା'ନ୍ତି। ସୁରେନ୍ଦ୍ର ଓ ତାଙ୍କର ସୈନ୍ୟମାନଙ୍କୁ ପ୍ରତି ଗାଁର ଲୋକମାନେ ଖାଇବାକୁ ଦେଇ ଆନ୍ଦୋଳନକୁ ବଞ୍ଚାଇ ରଖିଥାନ୍ତି। ତେଣୁ ସେମାନଙ୍କୁ ପରାସ୍ତ କରିବା ଅଥବା ଗିରଫ କରିବା ସମ୍ଭବ ହୁଅନ୍ତା କିପରି ?

ଦେଶଭକ୍ତଙ୍କ ପରି ସବୁ ଯୁଗରେ ସବୁଠି କେତେଟା ଦେଶଦ୍ରୋହୀ ବି ଥା'ନ୍ତି। ସେଇପରି ଏକ ଦେଶଦ୍ରୋହୀ ଥିଲେ ଦୟାନିଧି ମେହେର। ନିଶା ଜିନିଷ ବିକ୍ରି କରିବା ତାଙ୍କର ବେଉସା ଥିଲା। ଇଂରେଜମାନେ ତାଙ୍କୁ ହାତକରି ସୁରେନ୍ଦ୍ରସାଏଙ୍କୁ ଧରିବା ପାଇଁ ଚକ୍ରାନ୍ତ କଲେ। ସୁରେନ୍ଦ୍ରସାଏ ଥିଲେ ଧର୍ମପରାୟଣ। ରାଜବଂଶର ଦେବୀ ସମଲେଶ୍ୱରୀଙ୍କର ସେ ଥିଲେ ପରମ ଭକ୍ତ। ଦିନେ ଦୟାନିଧି ମେହେର ସମଲେଶ୍ୱରୀଙ୍କ ପ୍ରସାଦରେ ବିଷ ମିଶାଇ ସୁରେନ୍ଦ୍ରଙ୍କୁ ସେବାକରିବାକୁ ଦେଲେ। ସୁରେନ୍ଦ୍ରସାଏ ପ୍ରସାଦ ଭକ୍ତିରେ ସେବାକଲେ। କିନ୍ତୁ ଏ କ'ଣ ହେଲା ? କିଛି ସମୟ ପରେ ସେ ଅଚେତ ହୋଇଗଲେ। ଚେତା ଫେରିପାଇବା ଆଗରୁ ସେ ଇଂରେଜମାନଙ୍କ ହାତରେ ବନ୍ଦୀହୋଇ ସାରିଥିଲେ।

ସୁରେନ୍ଦ୍ରସାଏଙ୍କୁ ନିକଟରେ ରଖିଲେ ବିପଦ ପଡ଼ିପାରେ। ତାଙ୍କ ଦଳର ଲୋକମାନେ ପୁଣି ବିଦ୍ରୋହ କରିପାରନ୍ତି। ତେଣୁ ତାହାଙ୍କୁ ତାଙ୍କପ ଜନ୍ମମାଟିଠାରୁ ପାଞ୍ଚଶହ ମାଇଲ୍ ଦୂରରେ ଥିବା ଆସିର ଗଡ଼ରେ ବନ୍ଦୀକରି ରଖାଗଲା। ମାସେ ନୁହେଁ କି ବର୍ଷେ ନୁହେଁ, ଦୀର୍ଘ ୨୧ ବର୍ଷ ସେ ବନ୍ଦୀହୋଇ ରହିଲେ। ସେଇ ବନ୍ଦୀ ଅବସ୍ଥାରେ ୧୮୮୪ ମସିହାରେ ତାଙ୍କର ଦେହାନ୍ତ ହେଲା।

ଇଂରେଜମାନେ ସୁରେନ୍ଦ୍ରସାଏଙ୍କୁ ଜେଲ୍ ଭିତରେ ବହୁ ଯନ୍ତ୍ରଣା ଦେଇଥିଲେ। ରାଗ ସୁଝାଇବାପାଇଁ ସେମାନେ ଘାତକ ଲଗାଇ ତାଙ୍କ ଦେହର ବିଭିନ୍ନ ଅଂଶକୁ ହାଣି ପକାଇଥିଲେ। ତଥାପି ସେ ସବୁ କଷ୍ଟ ସହିଥିଲେ। ବୀର ସୁରେନ୍ଦ୍ରସାଏ ଦେଶପାଇଁ ପ୍ରାଣଦେଇ ଚିରଦିନକୁ ଯଶ ରଖିଯାଇଛନ୍ତି।

# ବିର୍ସା ମୁଣ୍ଡା

ଗୁରୁଜୀ କହିଲେ – "ପିଲାମାନେ, ଦେଶକୁ ସ୍ୱାଧୀନ କରିବାକୁ କେବଳ ରାଜା ଓ ସେନାପତିମାନେ ଆଗୁଆ ହୋଇନଥିଲେ – ବଣ ଜଙ୍ଗଲରେ ରହୁଥିବା ଆଦିବାସୀମାନେ ବି ଦେଶପାଇଁ ମାତିଉଠିଥିଲେ। ବିଦ୍ରୋହ କରିଥିଲେ। ସବୁଠି ଲଢ଼େଇରେ ସେ ଅଞ୍ଚଳର ଆଦିବାସୀମାନେ ପାଇକମାନଙ୍କ ସହିତ ମିଶି ଲଢ଼େଇ କରିଥିଲେ। ସିପାହି ବିଦ୍ରୋହରେ ମଧ୍ୟ ସେମାନେ ମିଶିଥିଲେ।

ଏବେ ଯେଉଁ ବିଦ୍ରୋହ କଥା ମୁଁ କହିବାକୁ ଯାଉଛି, ତା'ର ଚାଳକ ଥିଲେ ଜଣେ ଆଦିବାସୀ ଯୁବକ। ତାଙ୍କ ନାମ ବିର୍ସା ମୁଣ୍ଡା। ରାଞ୍ଚି ଓ ସିଂହଭୂମି ଅଞ୍ଚଳର ଆଦିବାସୀମାନଙ୍କୁ ତତାଇ ମତାଇ ଏକାଠିକରି ସେ ବିଦ୍ରୋହ କରିଥିଲେ। ଏଇ ବିଦ୍ରୋହ ବି ଏକ ଭୟଙ୍କର ରୂପ ଧରିଥିଲା।

ଭଲିହାତୁ ଗ୍ରାମରେ ୧୮୭୫ ମସିହାରେ ଜନ୍ମ ହୋଇଥିଲେ ମହାନ୍ ବୀର ବିର୍ସା ମୁଣ୍ଡା। ଗୁରୁବାର ଦିନ ଜନ୍ମ ହୋଇଥିବାରୁ ତାଙ୍କ ନାଆଁ ବିର୍ସା ରଖାଯାଇଥିଲା। ଏକେ ତ ଆଦିବାସୀ, ପୁଣି ଗରିବ। ତେଣୁ ବିର୍ସା ପିଲାଟି ଦିନରୁ ଅନ୍ୟ ପିଲାଙ୍କ ଭଳି ଛେଳି ମେଣ୍ଢା ଚରାଉଥିଲେ। ତାଙ୍କର ଗୋଟିଏ ଭଲ ଗୁଣ ଥିଲା – ସେ ଖୁବ୍ ସୁନ୍ଦର ବଂଶୀ ବଜାଇପାରୁଥିଲେ।

ଇଂରେଜମାନେ ସେତେବେଳେ ନୂଆକରି ସ୍କୁଲମାନ ବସାଉଥାନ୍ତି। ମାଗଣାରେ ପାଠ ପଢ଼ିବାର ସୁବିଧା ମିଳିବାରୁ ବିର୍ସା ମଧ୍ୟ ପାଠ ପଢ଼ିବା ପାଇଁ ସ୍କୁଲକୁ ଗଲେ। ସେତେବେଳେ ଇଂରେଜମାନେ ଶିକ୍ଷା ନାମରେ ସ୍କୁଲ ପିଲାଙ୍କୁ ଖ୍ରୀଷ୍ଟଧର୍ମର ଶିକ୍ଷା ଦେଉଥିଲେ। ସେମାନଙ୍କର ଖ୍ରୀଷ୍ଟିଆନ୍ ଧର୍ମକୁ ଏ ଦେଶରେ ପ୍ରଚାରକରି ହିନ୍ଦୁମାନଙ୍କୁ, ବିଶେଷକରି ଆଦିବାସୀମାନଙ୍କୁ ଖ୍ରୀଷ୍ଟିଆନ୍ କରିନେବାକୁ ସେମାଙ୍କର ଭିତିରି ଉଦ୍ୟମ ଥିଲା। ହିନ୍ଦୁ ଧର୍ମକୁ

ସେମାନେ ନିନ୍ଦାକରି କହିବାରୁ ବାଳକ ବିର୍ସା ତାର ପ୍ରତିବାଦ କରିଥିଲେ । ସେଥିପାଇଁ ସେ ଶିକ୍ଷକଙ୍କଠାରୁ ଖୁବ୍ ଦଣ୍ଡ ପାଇଲେ ଓ ସ୍କୁଲରୁ ତଡ଼ାଖାଇଲେ । ତେଣୁ ମାଇନର୍ ଯାଏଁ ପାଠପଢ଼ି ବିର୍ସା ମୁଣ୍ଡା ଘରେ ରହିଲେ ।



ବଣ ଜଙ୍ଗଲ ମୁଲକ । ସମସ୍ତେ ଅଶିକ୍ଷିତ ଗରିବ ଆଦିବାସୀ । ସେମାନଙ୍କର ମଙ୍ଗଳ ପାଇଁ ଅଳ୍ପ ଶିକ୍ଷା ପାଇଥିବା ଯୁବକ ବିର୍ସା ମୁଣ୍ଡା ଜୀବନର ପଣ କଲେ । ସେ ଆଦିବାସୀଙ୍କ ସେବାରେ ନିଜକୁ ଲଗାଇଲେ । କ୍ରମେ ସେ ସବୁଠି ସବୁରି ପ୍ରିୟ ହୋଇଉଠିଲେ । କେଉଁଠି ଆଦିବାସୀମାନେ ତାଙ୍କୁ ରାଜାପରି ଭାବି ଭକ୍ତି କଲେ ତ, କେତେକ ତାଙ୍କୁ ଭଗବାନଙ୍କ ଅବତାର ଭଳି ମାନିଲେ ।

ଇଂରେଜମାନେ ସେତେବେଳେ ଆମ ଦେଶର ଲୋକଙ୍କଠାରୁ ନାନାପ୍ରକାର ଅନ୍ୟାୟ କର ଆଦାୟ କରୁଥାନ୍ତି । ଆଦିବାସୀମାନେ

ଆଗଭଳି ମାଗଣାରେ ଜଙ୍ଗଲରୁ କାଠ କାଟିପାରିଲେ ନାହିଁ। ଜଙ୍ଗଲ କର ଦେଇ ପାରିବା ଭଳି ବଳ ସେମାନଙ୍କର ନଥିଲା। ତା'ଛଡ଼ା ସେମାନଙ୍କ ଜଙ୍ଗଲରୁ ସେମାନେ କାଠ ଆଣିବେ– ସରକାର କାହିଁକି ବା ପଇସା ନେବ? ସେ ତ ବିଦେଶୀ! ଜଙ୍ଗଲ ତ ଆଦିବାସୀଙ୍କର!

ଆଦିବାସୀ ଭାଇମାନଙ୍କୁ ଏକାଠି କଲେ ବିର୍ସା ମୁଣ୍ଡା। ସେମାନଙ୍କୁ ସାଥୀରେ ଧରି ସେ ଚାଇଁବସା ଗଲେ। କଚେରୀରେ ଅନ୍ୟାୟ ଜଙ୍ଗଲକର ବନ୍ଦ କରିବାପାଇଁ ଆପତ୍ତି ଜଣାଇଲେ। ବିର୍ସା ଆଦିବାସୀମାନଙ୍କୁ ଏକ ମେଳ କରିବା ଦେଖି ଇଂରେଜ ସରକାର ତାଙ୍କପ୍ରତି କଡ଼ା ନଜର ରଖିଲେ। ସେମାନେ ଆଶଙ୍କା କଲେ କେତେବେଳେ କ'ଣ ନାହିଁ କ'ଣ ଗୋଳମାଳ ଘଟିଯାଇପାରେ ବୋଲି।

ସେଇ ସମୟରେ ଛୋଟନାଗପୁର ଅଞ୍ଚଳରେ ଦୁର୍ଭିକ୍ଷ ପଡ଼ିଥାଏ। ସରକାର ଲୋକମାନଙ୍କୁ ସାହାଯ୍ୟ କରିବା ପାଇଁ ଚେଷ୍ଟା କଲେନାହିଁ। ତା'ଛଡ଼ା ଖଜଣା ଓ କେତେକ ଅନ୍ୟାୟ ପାଉଣା ଆଦାୟ ଦେବାକୁ ଲୋକଙ୍କୁ ବାଧ କରାଯାଉଥାଏ। ଚାରିଆଡ଼େ ଅଶାନ୍ତି। ଖାଇବାକୁ ନପାଇ ଲୋକମାନେ ପୋକମାଛି ପରି ମରୁଥାନ୍ତି। ବିର୍ସା ମୁଣ୍ଡା ସେମାନଙ୍କ ନେତା ହୋଇ ସରକାରଙ୍କୁ ବିରୋଧକରି ଆନ୍ଦୋଳନ ପାଇଁ ସଜବାଜ ହେଲେ। ସରକାର ଏହା ଜାଣିପାରି ବିର୍ସାଙ୍କୁ ଗିରଫ କରିନେଲେ ଓ ଦୁଇବର୍ଷ ଜେଲଦଣ୍ଡ ଭୋଗିବାପାଇଁ ରାଞ୍ଚି ଜେଲ୍‌କୁ ପଠାଇଦେଲେ।

କିଛିଦିନ ପରେ ଇଂଲଣ୍ଡର ରାଣୀ ଭିକ୍ଟୋରିଆଙ୍କ ଶାସନର ସୁବର୍ଣ୍ଣ ଜୟନ୍ତୀ ଚାରିଆଡ଼େ ପାଳନ କରାଗଲା। ଏଥିପାଇଁ ବିଭିନ୍ନ ଜେଲ୍‌ରୁ ବନ୍ଦୀମାନଙ୍କୁ ଛାଡ଼ିଦିଆଗଲା। ବିର୍ସା ମୁଣ୍ଡା ଜେଲ୍‌ରୁ ଖଲାସ ହୋଇ ଘରକୁ ଆସିଲେ। ହେଲେ ଲୋକଙ୍କ ଅବସ୍ଥା ଦେଖି ଶାନ୍ତି ପାଇଲେ ନାହିଁ। ଚାରିଆଡ଼େ ଦୁର୍ଭିକ୍ଷ! ବଣ ଜଙ୍ଗଲରେ

ଆଦିବାସୀମାନେ ମରି ସଢୁଛନ୍ତି। ଏଣେ ଉତ୍ସବପାଇଁ ଭୋଜିଭାତ, ସଭାସମିତିରେ ଅକଳନ ଟଙ୍କା ଖର୍ଚ୍ଚ ହେଉଛି। ଅଥଚ୍, ଖାଇବାକୁ ନପାଇ ମରୁଥିବା ମଣିଷଗୁଡ଼ାଙ୍କ ପ୍ରତି ଇଂରେଜ ସରକାର ଟିକିଏ ବି ନଜର ଦେଉନାହିଁ।

ଏହା ଦେଖି ବିର୍ସା ମନରେ ବହୁତ ଦୁଃଖ ପାଇଲେ। ଲୋକମାନଙ୍କ ସେବାପାଇଁ ସେ ବାହାରିପଡ଼ିଲେ। ନାନା ଅଞ୍ଚଳ ବୁଲି ଆଦିବାସୀମାନଙ୍କର ସୁଖଦୁଃଖ ସେ ବୁଝିଲେ। ସେମାନଙ୍କ ଅଭାବ ଦୂର କରିବାକୁ ଉପାୟ ଖୋଜିଲେ। ଏଥିପାଇଁ ବିର୍ସାଙ୍କ ପ୍ରତି ଆଦିବାସୀମାନଙ୍କର ଭକ୍ତି ଖୁବ୍ ବଢ଼ିଗଲା। ସେମାନେ ତାଙ୍କୁ 'ଧାରତୀଆବା' ଅର୍ଥାତ୍ 'ଜଗତ୍ ପିତା' ବୋଲି କହିଲେ।

ବିର୍ସା ଆଦିବାସୀମାନଙ୍କର ନେତା ହୋଇ ହଜାର ହଜାର ଆଦିବାସୀଙ୍କୁ ଏକାଠିକରି ସେମାନଙ୍କୁ ନେଇ ଅନେକ ସରକାରୀ ଥାନା ଉପରେ ଆକ୍ରମଣ କଲେ। ଏଥିରେ ବହୁତ ପୁଲିସ ମଲେ। ଅନେକ ଥାନାକୁ ପୋଡ଼ି ଧ୍ୱଂସ କରିଦିଆଗଲା। ଏପରିକି ଆଦିବାସୀ ବିପ୍ଳବୀମାନେ ରାଞ୍ଚିର ପ୍ରଧାନ ବିଚାରାଳୟକୁ ଆକ୍ରମଣ କରିଥିଲେ। ଆଦିବାସୀମାନଙ୍କର ଏ ଆନ୍ଦୋଳନ ଦେଖି ଇଂରେଜ ସରକାର ଖୁବ୍ ଡରିଗଲେ। ବିର୍ସାଙ୍କୁ ଧରାଇ ଦେବାକୁ ପୁରସ୍କାର ଘୋଷଣା କଲେ; କିନ୍ତୁ ତାହା ସଫଳ ହେଲାନାହିଁ।

'ଡୋମ୍ବାରୀ' ନାମକ ପାହାଡ଼ ଉପରେ ଦିନେ ହଜାର ହଜାର ଆଦିବାସୀ ଲୋକଙ୍କୁ ଏକାଠିକରି ବିର୍ସା ମୁଣ୍ଡା ଇଂରେଜ ସରକାର ସଙ୍ଗେ ଲଢ଼ିବାକୁ ସେମାନଙ୍କୁ କହୁଥିଲେ। ପୁଲିସ ଏ ଖବର ପାଇଗଲା। ପୁଲିସ ପାହାଡ଼ ଚାରିପାଖ ଘେରାଉକରି ସଭାସ୍ଥାନକୁ ଆଖିବୁଜା ଗୁଳି ଚଳାଇଲା। ଶହ ଶହ ଆଦିବାସୀ ସ୍ତ୍ରୀ ପୁରୁଷ ଏଥିରେ ମରିପଡ଼ିଲେ। ମାତ୍ର ବିର୍ସା ମୁଣ୍ଡା ମରଣ ମୁହଁରୁ ଅଳ୍ପକେ ରକ୍ଷାପାଇଯାଇ ଚକ୍ରଧରପୁରର ଜଙ୍ଗଲରେ ଭିତରେ ଲୁଚି ରହିଲେ। ତାଙ୍କ ସହିତ ମିଶିଥିବା ଅନ୍ୟ ବୀରମାନେ ଧରାପଡ଼ି ବନ୍ଦୀହେଲେ।

ସେ କିନ୍ତୁ ପୁଲିସ ଆଖିରେ ଧୂଳିଦେଇ ବହୁଦିନ ଧରି ସ୍ୱାଧୀନ ଭାବରେ ଥିଲେ ।

ଦିନେ ବିର୍ସା ଶୋଇଥିବା ଅବସ୍ଥାରେ ଭିତିରି ଖବର ପାଇ ତାଙ୍କୁ ପୁଲିସ ଗିରଫ କଲା । ପ୍ରଥମେ ବିର୍ସାଙ୍କୁ ରାଞ୍ଚି ଜେଲରେ ରଖାଗଲା । ମାତ୍ର ସରକାର ଭୟକଲେ । କାଳେ ଆଦିବାସୀମାନେ



ଏକାଠିହୋଇ ଜେଲ୍ ଆକ୍ରମଣ କରି ତାଙ୍କର ପ୍ରିୟ ନେତାଙ୍କୁ ଛଡ଼ାଇ ନେବେ– ଏଇ ଭୟରେ ବିର୍ସାଙ୍କୁ ହଜାରିବାଗ ଜେଲକୁ ଲୁଚାଇ କରି ନିଆଯାଇଥିଲା । ଇଂରେଜ ସରକାର ସେଠାରେ ତାଙ୍କର ହାତ, ଗୋଡ଼ ଓ ମୁହଁ ବାନ୍ଧି ରଖିଥିଲା ।

କିଛିଦିନ ପରେ ଶୁଣିବାକୁ ମିଳିଲା ଯେ ଜେଲ୍‌ରେ ହଇଜା

ରୋଗରେ ବିର୍ସାଙ୍କର ମୃତ୍ୟୁ ହୋଇଛି। କିନ୍ତୁ କେହି ଏକଥା ବିଶ୍ୱାସ କରିନଥିଲେ। ବିଷ ଦେଇ ବିଦ୍ରୋହୀବୀର ବିର୍ସା ମୁଣ୍ଡାଙ୍କୁ ମାରିଦିଆଯାଇଛି ବୋଲି ସନ୍ଦେହ କରାଗଲା। ସାରା ଜୀବନ ଲଢ଼େଇ କରି ଦେଶପାଇଁ ସହିଦ ହେଲେ ବିର୍ସା ମୁଣ୍ଡା। ସାଧାରଣ ଜଙ୍ଗଲୀ ଆଦିବାସୀ ହୋଇ ସେ ଯେଉଁ ବିଦ୍ରୋହର ନିଆଁ ଜାଳିଥିଲେ, ସେଥିରେ ଭାରତର ଇଂରେଜ ଶାସନ କମ୍ ଛଟପଟ ହୋଇନଥିଲା। ବିର୍ସା ମୁଣ୍ଡାଙ୍କ ଦାନ ଏ ଦେଶପାଇଁ ଖୁବ୍ ମହାନ୍– ଏକଥା ଇତିହାସ କହିବ।

# ଦୋରା ବିଶୋଇ ଓ ଚକ୍ର ବିଶୋଇ

ଜଣେ ଛାତ୍ର କହିଲା– "ଗୁରୁଜୀ, ଜଣେ ଆଦିବାସୀ ଯୁବକ ଇଂରେଜମାନଙ୍କୁ ବିରୋଧ କରି ଏପରି ବିଦ୍ରୋହ କରିବା ଖୁବ୍ ଆଶ୍ଚର୍ଯ୍ୟ କଥା।"

ଗୁରୁଜୀ କହିଲେ– "ନା, ଆଶ୍ଚର୍ଯ୍ୟ କଥା କ'ଣ? ଆଦିବାସୀଟିଏ ପାଠ ପଢ଼ିନଥାଇପାରେ, ସେ ଗରିବ ହୋଇପାରେ, ମାତ୍ର ତାର ବି ନିଜ ଦେଶ ପାଇଁ ମାୟା ମମତା ଥାଏ। ସେଥିପାଇଁ ସେ ଅନ୍ୟାୟର ପ୍ରତିବାଦ କରେ।"

ଛାତ୍ରଟି କହିଲା– "ଠିକ୍‌କଥା ଗୁରୁଜୀ, ହେଲେ ସମସ୍ତଙ୍କୁ ଏକଜୁଟ କରିବା କ'ଣ ସହଜ କଥା? ବିର୍ସା ମୁଣ୍ଡାଙ୍କ ପରି ଆଉ କେହି ଏମିତି ଆଦିବାସୀ ନେତା ଥିଲେ ତାଙ୍କ କଥା କହନ୍ତୁ।"

ଗୁରୁଜୀ କହିଲେ– "ହଁ, ଅନେକ ଆଦିବାସୀ ଭାଇ ଅନେକ ବିଦ୍ରୋହରେ ମିଶି ଦେଶପାଇଁ କଷ୍ଟ ସହିଛନ୍ତି, ଜୀବନ ଦେଇଛନ୍ତି।"

ପିଲାମାନେ ଅନୁରୋଧ କଲେ – "ଗୁରୁଜୀ, ଏମିତି ଆଉଜଣେ ଆଦିବାସୀ ନେତାଙ୍କ ବିଷୟରେ କହନ୍ତୁ, ଆମେ ଶୁଣିବୁ ଓ ତାଙ୍କ କଥା ଜାଣିବୁ।"

ଗୁରୁଜୀ କହିଲେ– ଆଉ ଦୁଇଜଣ ଆଦିବାସୀ ବୀରଙ୍କ କଥା କହୁଛି ଶୁଣ। ସେମାନେ ହେଲେ ଦୋରା ବିଶୋଇ ଓ ତାଙ୍କ ପୁଅ ଚକ୍ର ବିଶୋଇ। ଏଇ ବାପ ଓ ପୁଅ ରାଜ୍ୟର ସ୍ୱାଧୀନତା ଆନ୍ଦୋଳନର ଦୁଇ ମହାନ୍ ବୀର ଓ ନେତା ଥିଲେ।

୧୮୩୫ ମସିହାରେ ଆମ ଓଡ଼ିଶାର 'ଘୁମୁସର ବିଦ୍ରୋହ' ଚାରିଆଡ଼େ ଚମକ ସୃଷ୍ଟି କରିଥିଲା। ଆଉ ଏଇ ବିଦ୍ରୋହର ନେତା ଥିଲେ ଦୋରା ବିଶୋଇ। ସେ ଜାତିରେ କନ୍ଧ ଥିଲେ। ସେ ପିଲାଦିନୁ ଧନୁତୀର ମାରିବା, କୁସ୍ତି କରିବା ଆଦି ବିଦ୍ୟା ଶିଖିଥିଲେ। ସେଥିରେ ଖୁବ୍ ପାରିବାର ହୋଇଥିଲେ। ତେଣୁ ସମସ୍ତେ ତାଙ୍କୁ ସର୍ଦ୍ଦାର ବୋଲି କହିଲେ ଓ ମାନିଲେ। କନ୍ଧ ଭାଷାରେ ସର୍ଦ୍ଦାର ବଦଳରେ 'ଦୋରା' ବୋଲି ତାଙ୍କୁ କହୁଥିଲେ।

ଦୋରା ବିଶୋଇ ଯେଉଁ ବିଦ୍ରୋହର ନେତା ଥିଲେ ତା'ର ଏକ କାରଣ ଥିଲା। କନ୍ଧମାନଙ୍କର ରାଜା ଥିଲେ ଅନାଦି ଜାନି। ତାଙ୍କୁ ଇଂରେଜମାନେ ଅପମାନିତ କରିଥିଲେ। ତେଣୁ କନ୍ଧମାନେ ମେଳି ହୋଇ ଇଂରେଜମାନଙ୍କୁ ତଡ଼ି ଅପମାନର ପ୍ରତିଶୋଧ ନେବାପାଇଁ ଚେଷ୍ଟା କରିଥିଲେ।

ଘୁମୁସର ରାଜ୍ୟରେ ଥିବା କନ୍ଧମାନଙ୍କର ରାଜା ଅନାଦି ଜାନି ଦିନେ ଶର ମାରି ବାର୍‌ହାଟିଏ ଶିକାର କରିଥିଲେ। ସେତିକିବେଳେ ଗୋରା ସିପାହିମାନେ ପହଞ୍ଚିଯାଇ ମଲା ବାର୍‌ହାଟିକୁ ନେଇଯିବାପାଇଁ ବସିଲେ। କନ୍ଧରାଜା କହିଲେ ସେ ବାର୍‌ହାକୁ ମାରିଛନ୍ତି ତେଣୁ ଶିକାର ତାଙ୍କର। ସିପାହିମାନେ କହିଲେ ସେମାନେ ମାରିଛନ୍ତି। ସରଳ କନ୍ଧରାଜା ଏ ମିଛକଥାରେ ରାଗିଯାଇ ସିପାହିଙ୍କୁ ମୁଥମାରି ଆହତ କଲେ। ସିପାହିମାନେ କନ୍ଧରାଜାଙ୍କୁ ଆକ୍ରମଣ

କରି ତାଙ୍କୁ ଖଣ୍ଡିଆଖାବରା କଲେ ଓ ମଲା ବାର୍‌ହାକୁ ମୁଣ୍ଡାଇ ଗାଁ ଗାଁ ବୁଲିବାକୁ କହିଲେ । କଥା ନମାନିଲେ ଗୁଳିକରି ମାରିଦେବା ଧମକ ଶୁଣି ବାଧହୋଇ କନ୍ଧରାଜା ତାହାହିଁ କଲେ ।



କିନ୍ତୁ ତାଙ୍କ ଜାତି ଦଳପତିଙ୍କ ପ୍ରତି ଏ ଘୋର ଅପମାନ ସହିପାରିଲାନି । କନ୍ଧ ଯୁବକମାନେ ମେଳିକଲେ । ଦୋରା ବିଶୋଇଙ୍କୁ

ନେତାକରି ଇଂରେଜମାନଙ୍କୁ ଆକ୍ରମଣ କରି ଘୁମୁସର ଅଞ୍ଚଳରୁ ତଡ଼ିବାକୁ ଶପଥ ନେଲେ। ଜଙ୍ଗଲରେ ଲୁଚିରହି ସେମାନେ ଇଂରେଜମାନଙ୍କ ଉପରେ ଅଚାନକ ଆକ୍ରମଣ କରୁଥାନ୍ତି ଓ ମାରିପକାଉଥାନ୍ତି। କନ୍ଧମାନଙ୍କର ଏଭଳି ଆକ୍ରମଣରେ ଘୁମୁସରରେ ଥିବା ଇଂରେଜମାନେ ଖୁବ୍ ଡରିଗଲେ ଓ କେହି ନିଜକୁ ନିରାପଦ ମଣିଲେ ନାହିଁ।

ଏଇ କନ୍ଧମେଳିକୁ ଦମନ କରିବାପାଇଁ ସରକାର କଠୋର ବ୍ୟବସ୍ଥା କଲେ। ବହୁ ସ୍ଥାନରେ କନ୍ଧ ଓ ଇଂରେଜ ସିପାହିଙ୍କ ଭିତରେ ପ୍ରବଳ ଲଢ଼େଇ ଲାଗିଗଲା। କନ୍ଧବୀରମାନେ ଅନେକ ଇଂରେଜ ସୈନ୍ୟଙ୍କୁ ମାରିପକାଇଲେ। ଏଇ ଲଢ଼େଇରେ ଦୋରାଙ୍କର ଲଢୁଆ ବୀରମାନେ ମରିଗଲେ ଅଥବା ବନ୍ଦୀହେଲେ। ମାତ୍ର ଇଂରେଜମାନଙ୍କର ବହୁ ସିପାହିଙ୍କ ସମେତ ଦୁଇଜଣ ଖୁବ୍ ଜଣାଶୁଣା ସେନାପତି ମରିବାରୁ ସରକାର ଚିନ୍ତିତ ହୋଇପଡ଼ିଲେ। ତେଣୁ ଦୋରାଙ୍କୁ ଧରିବାକୁ ସବୁ ପ୍ରକାର ଉପାୟ କଲେ। ଦୋରା କିନ୍ତୁ ଜଙ୍ଗଲ ଭିତରେ ରହିଥାନ୍ତି। ପ୍ରତିଦିନ ସେ ନିଜର ରହିବା ଜାଗା ବଦଳାଉଥାନ୍ତି। ତେଣୁ ତାଙ୍କୁ ଧରିବା ସମ୍ଭବ ହେଲାନାହିଁ।

ଥରେ ସେ ଜଣକ ଘରେ ଲୁଚି ରହିଥିବାବେଳେ ଗୋରାସୈନ୍ୟ ଖବର ପାଇଗଲେ। ସଙ୍ଗେ ସଙ୍ଗେ ସେ ଘରକୁ ଘେରାଉ କରି ଘରର ଅନ୍ଦିକନ୍ଦି ଖୋଜିଲେ; କିନ୍ତୁ ଦୋରାଙ୍କୁ ପାଇଲେ ନାହିଁ। ସେମାନେ ଭାବି ଆଶ୍ଚର୍ଯ୍ୟ ହେଲେ ଯେ— ଚତୁର ଦୋରା କେଉଁ ଉପାୟରେ ସେଠାରୁ ଖସିଗଲେ? ଠିକ୍ ସେଇଭଳି ଆଉଥରେ ସନ୍ଦାବାଲି ଗାଁରେ ରହିଥିବା ବେଳେ ଇଂରେଜ ସୈନ୍ୟମାନେ ଦୋରାଙ୍କୁ ଘେରାଉ କରିଥିଲେ। ମାତ୍ର କିପରି ସେ ସିପାହିଙ୍କ ଘେରରୁ ଖସି ଚାଲିଯାଇ ପାରିଲେ ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ।

ଶେଷଯାଏଁ ଚତୁର ଦୋରା ଧରାପଡ଼ିନଥିଲେ। ମାତ୍ର କେବେ କେଉଁଠି କି ଅବସ୍ଥାରେ ସେ ମରିଥିଲେ ତାହା ଆଜି ମଧ୍ୟ ଅଜଣା

ରହିଛି। ଦେଶର ସ୍ୱାଧୀନତା ପାଇଁ ତାଙ୍କର ଦାନକୁ କେହି ଭୁଲି ପାରିବେ ନାହିଁ।

ଦୋରା ସିନା ଲୁଚିଗଲେ, କିନ୍ତୁ ତାଙ୍କର ବୀରପୁତ୍ର ଚକ୍ର ବିଶୋଇ ଯୁବକ ହେବାମାତ୍ରେ ରଣ ହୁଂକାର ଦେଲେ। ବାପାଙ୍କର କାମକୁ ସେ ପୂରାକରିବାକୁ ବାହାରି ପଡ଼ିଲେ। ବାପ ଦୋରାଙ୍କ ପରି ପୁଅ ଚକ୍ର ମଧ ଜଣେ ଖୁବ୍ ସାହସୀ ଓ ବଳୁଆ ମଣିଷ ଥିଲେ। ଚକ୍ରଙ୍କ ନେତୃତ୍ୱରେ କନ୍ଧମେଳି ପୁଣି ଘୁମୁସର ସାରା ବ୍ୟାପିଗଲା। ବହୁ ଇଂରେଜ ସୈନ୍ୟ ନିହତ ହେଲେ। ଏ ଖବର ପାଇ ବିଲାତର ଗୋରା ସରକାର ବିପଦ ଗଣିଲେ। ଯେକୌଣସି ଉପାୟରେ ଆନ୍ଦୋଳନର ନେତା ଚକ୍ର ବିଶୋଇଙ୍କୁ ବନ୍ଦୀ କରିବାକୁ ସେଠାରୁ ଆଦେଶ ଆସିଲା। ମାତ୍ର ସେ ତ ସିଂହ ଶିଶୁ– ସେ ଡର ଭୟ କ'ଣ ଜାଣେ ନାହିଁ। ବହୁ ଚେଷ୍ଟାକରି ମଧ ତାଙ୍କୁ ଧରିପାରିଲେ ନାହିଁ।

ବିଶୋଇ ନିଜେ ଆସି ଧରାଦେଲେ ତାଙ୍କୁ କ୍ଷମାଦିଆଯିବ ଓ ପେନ୍‌ସନ୍ ଦିଆଯିବ ବୋଲି ସରକାରଙ୍କ ତରଫରୁ ଘୋଷଣା କରାଗଲା। ଚକ୍ର କିନ୍ତୁ ଏଥିରେ ଭଳିନଯାଇ ଲଢ଼େଇ ଚାଲୁରଖିଥାନ୍ତି। କିନ୍ତୁ କେତେମାସ ପରେ ବିଦ୍ରୋହ କ୍ରମେ ମରି ମରି ଆସିଲା। ଦୀର୍ଘ କୋଡ଼ିଏ ବର୍ଷ ଧରି ସେ ଜଙ୍ଗଲରେ ଲୁଚି ରହିଥାନ୍ତି। ବାପ ଦୋରାଙ୍କ ପରି କେବେ କେଉଁଠି ସେ ମରିଥିଲେ ତାହା କେହି ଜାଣିପାରି ନାହାନ୍ତି ଏଯାଏଁ।

—

## ବୀର-ବାଳକ ବାଜି ରାଉତ

ଗୁରୁଜୀ କିଛି ସମୟ ନୀରବ ହୋଇ ବସିଲେ । ପିଲାମାନେ କିନ୍ତୁ ଆହୁରି କିଛି ଶୁଣିବାକୁ ମନକରୁଥିଲେ । ଜଣେ ପିଲା କହିଲା – "ଗୁରୁଜୀ, ସେତେବେଳେ ପିଲାମାନେ ତ ବହୁତ ଡରି ଡରି ରହୁଥିବେ । ସବୁଠି ଲଢ଼େଇ, ସବୁଠି ପୁଲିସ୍, ସବୁ ଗାଁରେ ତ ଧରପଗଡ଼ ଚାଲିଥିବ । ଆମଭଳି ପିଲାମାନେ ତ ଡରରେ ଘରୁ ବାହାରୁନଥିବେ ।"

ଗୁରୁଜୀ କହିଲେ – "ନାଇଁରେ ପିଲାମାନେ – ବରଂ ସେତେବେଳେ ତୁମ ବୟସର ଛୋଟ ପିଲାଙ୍କୁ ଲଗାଇ ଏଇ ବିଦ୍ରୋହୀମାନେ ବହୁତ କାମ କରିପାରୁଥିଲେ । ତୁମରି ପରି ଛୋଟପିଲା ମଧ୍ୟ ଦେଶ କାମ ପାଇଁ ଜୀବନ ଦେଇ ସହିଦ ହୋଇଛନ୍ତି । ସେଇପରି ଏକ ବୀର ବାଳକଙ୍କର କଥା କହୁଚି ଶୁଣ ।

ସେ ତୁମରି ପରି ଛୋଟ ପିଲାଟିଏ – ବାର ବରଷର ବାଳକ ବାଜି ରାଉତ । ଢେଙ୍କାନାଳ ରାଜ୍ୟର ନୀଳକଣ୍ଠପୁର ଗାଁରେ ଏକ ଖଣ୍ଡାୟତ ପରିବାରରେ ବାଜିର ଜନ୍ମ । ବୁଢ଼ୀମା ତାର ଧାନକୁଟି ପେଟପାଟଣା ପାଳେ । ଆଉ ବାଜି ନଈ ପାଣିରେ ନାଆ ମେଲିଦେଇ ମନ ଖୁସିରେ ନାଆ ଚଳାଏ ।

ଢେଙ୍କାନାଳ ଥିଲା ଏକ ଗଡ଼ଜାତ ରାଇଜ । ରାଜା ଶାସନରେ ଲୋକମାନେ ବହୁତ କଷ୍ଟ ଭୋଗିଲେ । ତେଣୁ ଲୋକମାନେ ଏକାଠି ହେଲେ, ସଭାକଲେ । ସେଇଠି ଗଢାହେଲା 'ପ୍ରଜାମଣ୍ଡଳ' । ପ୍ରଜାମଣ୍ଡଳ ଲୋକମାନଙ୍କ ପ୍ରତି ହେଉଥିବା ଅନ୍ୟାୟ ଓ ଜୁଲମର ପ୍ରତିବାଦ କଲା । ଏ ହେଲା ୧୯୩୮ ମସିହା ବେଳର କଥା ।

ପ୍ରଜାମଣ୍ଡଳ ତରଫରୁ ରାଜାଙ୍କ ନିକଟରେ ପ୍ରଜାଙ୍କ ଦୁଃଖର ପ୍ରତିକାର ଦାବିକରି ଅନେକ ନିବେଦନ କରାଗଲା । ମାତ୍ର ରାଜା ସେ ସବୁ ମୋଟେ ଶୁଣିଲେ ନାହିଁ । ବରଂ ପ୍ରଜାମାନଙ୍କୁ ଓ ପ୍ରଜାମଣ୍ଡଳର ନେତାମାନଙ୍କୁ ଦଣ୍ଡ ଦେଲେ । ତେଣୁ ଲୋକମାନେ ରାଜାଙ୍କ ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ କରିଦେଲେ । ଗାଁ କୁ ଗାଁ ମାଡ଼ି ଚାଲିଲା ବିଦ୍ରୋହ । କେହି ପ୍ରଜା ରାଜାଙ୍କ ଆଦେଶ ମାନିଲେ ନାହିଁ । କେହି ମଧ ରାଜାଙ୍କ କର୍ମଚାରୀମାନଙ୍କୁ ସହଯୋଗ ଦେଲେନାହିଁ ।

ଏଥିରେ ରାଜା ଖୁବ୍ ରାଗିଉଠିଲେ । ଆନ୍ଦୋଳନ ଦମନ କରିବାକୁ ଇଂରେଜ ସରକାରଙ୍କୁ ସୈନ୍ୟ ସାହାଯ୍ୟ ମାଗିଲେ । ପୁଲିସମାନେ ଗାଁ ଗାଁ ବୁଲି ଲୋକମାନଙ୍କୁ ଧମକ ଚମକ ଦେଲେ, ମାଡ଼ ଦେଲେ । ସେମାନଙ୍କୁ ଏକାଠି ହେବାକୁ ସୁବିଧା ଦେଲେନାହିଁ ।

ଭୁବନ ଢେଙ୍କାନାଳର ଏକ ବଡ଼ ଗାଁ । ସେଠାରେ ଖୁବ୍ ଆନ୍ଦୋଳନ ଚାଲିଥାଏ । ଆନ୍ଦୋଳନକୁ ଦମନ କରିବା ପାଇଁ ରାଜାଙ୍କ ପୁଲିସ ବହୁ ସଂଖ୍ୟାରେ ଯାଇଥାନ୍ତି । ସେମାନେ ଫେରିବାବେଳେ ବ୍ରାହ୍ମଣୀ ନଈ ପାରିହୋଇ ଢେଙ୍କାନାଳକୁ ଫେରିବା କଥା । ପ୍ରଜାମଣ୍ଡଳ ଠିକ୍‌କଲା – ସେମାନଙ୍କୁ ନାଆରେ ନଈ ପାରି କରି ଦିଆଯିବ ନାହିଁ ।

ବର୍ଷାଦିନ । ତିନି ଦିନ ହେଲା ବର୍ଷା ଲାଗି ରହିଛି । ଦୁଇ କୂଳ ଖାଇ ନଈ ବହୁଛି । ସୁଅ ବି ଟାଣ ଅଛି । କିଏ ଜଗିବ ଘାଟ ? କଥା ହେଲା ସେଦିନ ଘାଟ ଜଗିବ ବାଳକ ବାଜିରାଉତ । ଘାଟିଆ ନଥାଇ ଏ ଛୁଆଟା କ'ଣ ଡଙ୍ଗା ନେଇ ପାରିବ ବଢ଼ନ୍ତା ନଈରେ ? ପୁଣି ରାତିଟାରେ ? ତେଣୁ ସିପାହୀମାନେ ବାଧ୍ୟ ହୋଇ ଏ ପାଖରେ ରହିଯିବେ ଓ ପ୍ରଜାମଣ୍ଡଳ ଲୋକମାନେ ତାଙ୍କୁ ଶାସ୍ତି ଦେବେ ।

ରାତିରେ ଫଉଜ ଫେରିଆସିଲେ ଭୁବନ ଗାଁରୁ । ସେଠି ସେମାନେ ବହୁ ଲୋକଙ୍କୁ ମାଡ଼ମାରି ଲହୁଲୁହାଣ କରି ଖୁବ୍ ଦମ୍ଭରେ ଫେରିଥାନ୍ତି ।

ଘାଟ ପାଖରେ ପହଞ୍ଚି ଡାକିଲେ –କିଏ ଅଛି ଡଙ୍ଗାରେ ? ଆମେ ନଈ ପାରି ହେବୁ । ଡଙ୍ଗା ଆଣେ ।



ବୀର ବାଳକ ବାଜିରାଉତ ନାଆ ଉପରୁ ଉତ୍ତର ଦେଲା– ''ପ୍ରଜାମଣ୍ଡଳର ଆଦେଶ ନାହିଁ– ମୁଁ ଡଙ୍ଗା ଛାଡ଼ିବି ନାହିଁ ।'' ପିଲାଟାର ଏ ସାହସ ଦେଖି ରାଗିଉଠିଲେ ସିପାହୀମାନେ–

ବାଜିରାଉତର ସାନ ମଥାଟି ପୁଲିସର ବନ୍ଧୁକ କୁନ୍ଦା ମାଡ଼ରେ ଫାଟି ଦି'ଫାଳ ହେଇଗଲା। ରକ୍ତ ସାଲୁବାଲୁ ବାଜି ତଳେ ପଡ଼ିଯାଇ ପୁଣି ଉଠି ଠିଆହେଲା। ଡଙ୍ଗା ଉପରୁ କୂଳକୁ ଡେଇଁପଡ଼ି ପାଟିକରି ଡାକିଲା। –"କିଏ କେଉଁଠି ଅଛ ପ୍ରଜାମଣ୍ଡଳ ଭାଇମାନେ ଦୌଡ଼ି ଆସ। ପୁଲିସ ଆମ ଘାଟ ଉପରେ।"

ଚାହୁଁ ଚାହୁଁ ଅନେକ ଲୋକ ଆସି ନଈ ଘାଟରେ ଜମାହୋଇ ଗଲେ। ସେମାନେ ଡଙ୍ଗାର ଦଉଡ଼ିକୁ ଭିଡ଼ି ଧରିଲେ– ଡଙ୍ଗା ଯେପରି ଯିବନାହିଁ। ପୁଲିସମାନେ ଛୁରିରେ ଦଉଡ଼ି କାଟିଦେଇ ଡଙ୍ଗା ନେଲେ ନଦୀ ଭିତରକୁ। ତା'ପରେ ଘାଟରେ ଜମିଥିବା ଲୋକଙ୍କ ଉପରକୁ ପୁଲିସ ଗୁଳିଚଳାଇଲା। ଦେଖୁ ଦେଖୁ ବାଜିରାଉତ ସମେତ ୭ ଜଣ ଯୁବକ ଗୁଳିମାଡ଼ରେ ଟଳିପଡ଼ିଲେ ସେଇଠି ସେଇ ମୁହୂର୍ତ୍ତକ ମଧ୍ୟରେ।

ତା'ପରଦିନ ଏଇ ସାତ ଜଣ ସହିଦଙ୍କ ଶବକୁ କଟକ ଅଣାଗଲା। ଏକ ବିରାଟ ଶୋଭାଯାତ୍ରାରେ କଟକ ସହରରେ ବୁଲାଗଲା। ସମସ୍ତଙ୍କ ଆଗରେ ଥିଲା ଫୁଲ ପତ୍ରରେ ସଜାହୋଇ ଅମର ସହିଦ ବାଜିରାଉତଙ୍କ ଶବ। ପଛରେ ଧାଡ଼ିବାନ୍ଧି ଚାଲୁଥିଲେ ଅଗଣିତ ମଣିଷ। ସବୁରି ମୁହଁରେ ବାଜିରାଉତର ଜୟଧ୍ୱନି। କଟକ ଖାନନଗର ମଶାଣିରେ ଏଇ ସହିଦମାନଙ୍କୁ ଦାହକରାଯାଇଥିଲା।

ଦେଶ ଆଉ ଜାତି ଏହିଭଳି ସହିଦମାନଙ୍କଠାରେ ଚିରଦିନ ଋଣୀ ରହିଛି।

# ଲକ୍ଷ୍ମଣ ନାୟକ

ଗୁରୁଜୀ କହିଲେ – "ପିଲାମାନେ, ଆଜି ତ କେତେଜଣ ସହିଦଙ୍କ କଥା କହିଲି। ଆଉଦିନେ ଆହୁରି କେତେ ଜଣଙ୍କ କଥା କହିବି ତୁମେମାନେ ଶୁଣିବ। ଆଜି ଆଉ ଜଣେ ଆଦିବାସୀ ସହିଦଙ୍କ କଥା କହୁଛି, ଶୁଣ।"

ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଆମ ଦେଶରେ ସ୍ୱାଧୀନତା ଆନ୍ଦୋଳନ ଚାଲିଥାଏ। ଇଂରେଜମାନଙ୍କ ବିରୋଧରେ ବହୁଥର ବହୁ ଆନ୍ଦୋଳନ ହୋଇଯାଇଥାଏ। ସେସବୁ ଭିତରେ ୧୯୪୨ ମସିହାର 'ଅଗଷ୍ଟ ବିପ୍ଳବ' ଖୁବ୍ ବଡ଼ ଆକାରର ହୋଇଥିଲା। ଏଇ ଆନ୍ଦୋଳନରେ ଇଂରେଜମାନଙ୍କୁ 'ଭାରତଛାଡ଼' ଡାକରା ଦିଆଯାଇଥିଲା। ଆଉ ଏଇ ଆନ୍ଦୋଳନ ଏପରି ଗୁରୁତର ହେଲା ଯେ ଇଂରେଜ ସରକାର ଏହାର ପାଞ୍ଚଟା ବର୍ଷ ପରେ ଭାରତ ଛାଡ଼ି ଚାଲିଯିବାକୁ ବାଧହେଲେ।

ଏଇ ଅଗଷ୍ଟ ଆନ୍ଦୋଳନକୁ ମଧ୍ୟ ଚପାଇଦେବାକୁ ଇଂରେଜ ସରକାର ଲୋକଙ୍କ ଉପରେ ବହୁ ଅତ୍ୟାଚାର କରିଛି। ଅନେକ ଲୋକ ପୁଲିସ ଗୁଳିରେ ମରିଛନ୍ତି, ଫାଶୀ ପାଇଛନ୍ତି। ସେମାନଙ୍କ ଭିତରୁ କୋରାପୁଟ ଜିଲ୍ଲାର ବୀର ଲକ୍ଷ୍ମଣନାୟକ ଜଣେ। ତାଙ୍କୁ ଫାଶୀ ଦଣ୍ଡ ଦିଆଯାଇଥିଲା।

ଲକ୍ଷ୍ମଣନାୟକ ଥିଲେ ଭୂମିଜ ଆଦିବାସୀ। ଘର ତାଙ୍କର କୋରାପୁଟ ଜିଲ୍ଲାର ତେନ୍ତୁଲିଗୁମା ଗାଁରେ। ସେ ଗାଁର ମୁଖିଆ ଥିଲେ। ଲୋକମାନଙ୍କର ସୁଖଦୁଃଖ ବୁଝୁଥିଲେ। ଆଦିବାସୀମାନଙ୍କ ପ୍ରତି ସରକାର ଓ ସାହୁକାର ମହାଜନ ମାନଙ୍କର ଅତ୍ୟାଚାରର

ସେ ବିରୋଧ କରୁଥିଲେ । ଗାନ୍ଧିଜୀଙ୍କ ଡାକରାରେ ସେ କଂଗ୍ରେସରେ ମିଶିଲେ । ନିଜେ ଅରଟରେ ସୂତାକାଟି ଅନ୍ୟମାନଙ୍କୁ ସୂତା କାଟିବା ଶିଖାଇଲେ । ବଣ ଜଙ୍ଗଲରେ ଗାଁକୁ ଗାଁ ବୁଲି ଆଦିବାସୀ ଭାଇମାନଙ୍କୁ ଗାନ୍ଧିଜୀଙ୍କ କଥା କହିଲେ । କଂଗ୍ରେସର ନୀତି ମାନି ଆଦିବାସୀ ଲୋକଙ୍କ ଭିତରେ ଆନ୍ଦୋଳନ ଚଳାଇଲେ ।



୧୯୪୨ର ଅଗଷ୍ଟବିପ୍ଳବରେ ଯୋଗଦେଲେ ଲକ୍ଷ୍ମଣନାୟକ । ଠିକ୍ ହେଲା ଯେ ମାତିଲି ଥାନା ଉପରେ କଂଗ୍ରେସର ତ୍ରିରଙ୍ଗ ପତାକା ଉଡାଇବାକୁ ହେବ । ଅଗଷ୍ଟ ମାସ ୨୧ ତାରିଖ ଦିନ ମାତିଲି ହାଟ ପଡ଼ିଆରେ ଗୋଟିଏ ସଭା ହେଲା । ବହୁତ ଲୋକ ସେଥିରେ ଯୋଗଦେଲେ । ଲକ୍ଷ୍ମଣନାୟକ ଆଦିବାସୀ ଲୋକଙ୍କ ଭାଷାରେ ଗାନ୍ଧିଜୀଙ୍କ କଥା ସେମାନଙ୍କୁ କହିଲେ । ଦେଶକୁ ସ୍ୱାଧୀନ କରିବାକୁ ସମସ୍ତେ ଏକମନ ହୋଇ କାମ କରିବେ ବୋଲି ଶପଥ ନେଲେ । ସଭା ସରିଲା । ସମସ୍ତେ ହାତରେ ତ୍ରିରଙ୍ଗ ପତାକା

ଧରି ଲକ୍ଷ୍ମଣ ନାୟକଙ୍କୁ ଆଗରେ ଚଲାଇ ମାତିଲିଥାନା ଆଡ଼କୁ ଆଗେଇ ଚାଲିଲେ ।

ଥାନାବାବୁ ଆଗରୁ ଏ ଖବର ପାଇସାରିଥିଲା । ତେଣୁ ସେ ପୁଲିସ ଯୋଗାଡ଼ କରିରଖିଥାଏ । କେତେଜଣ ପୁଲିସ ଲକ୍ଷ୍ମଣଙ୍କୁ ଥାନା ଭିତରକୁ ଧରିନେଲେ । ଥାନା ବାରଣ୍ଡାରେ ତାଙ୍କୁ ପକାଇ ବହୁତ ମାଡ଼ ଦେଲେ । ତାଙ୍କ ନିଶ ଦାଢ଼ିକୁ ଉପାଡ଼ିଲେ । ଯନ୍ତ୍ରଣାରେ ଲକ୍ଷ୍ମଣ ଚିତ୍କାର କରୁଥାନ୍ତି । ହେଲେ ଗାନ୍ଧିଜୀଙ୍କ କଥା ମାନି ହିଂସା କଲେ ନାହିଁ, ସବୁ କଷ୍ଟ ସହିଲେ । ସେତେବେଳେ ଥାନା ବାହାରେ ଜମିଥିବା ଲୋକଙ୍କ ଉପରେ ମଧ ଲାଠି ମାଡ଼ ଚାଲିଥାଏ । ବହୁତ ଲୋକ ଆହତ ହେଲେ । ତଥାପି ଜଣ ଜଣ କରି ଲୋକ ଥାନା ଉପରେ ତ୍ରିରଙ୍ଗ ପତକା ଉଡ଼ାଇବାକୁ ଯାଉଥାନ୍ତି ଓ ପୁଲିସ ଗୁଳିରେ ମରିପଡୁଥାନ୍ତି । ସେଦିନ ସେଠାରେ ଏଗାର ଜଣ ଆଦିବାସୀଭାଇ ପୁଲିସ ଗୁଳିରେ ସହିଦ ହେଲେ ।

ଲକ୍ଷ୍ମଣନାୟକ ମରିଗଲା ଭାବି ପୁଲିସମାନେ ତାଙ୍କୁ ଥାନା ପାଖ ନାଳରେ ପକାଇଦେଲେ । ରାତି ଅଧକୁ ତାଙ୍କର ଚେତା ଆସିଲା । ସେ ନାଳରୁ ଉଠିଲେ । ଦେହ ମୁଣ୍ଡ ଭୀଷଣ ଦରଜ । ମୁହଁ ଫୁଲିଯାଇଥାଏ । ଅସହ୍ୟ ଯନ୍ତ୍ରଣା । ସେଇ ଆବସ୍ଥାରେ ସେ ଶହେ କିଲୋମିଟର ଦୂରରେ ଥିବା ଜୟପୁର ସହରକୁ ଯିବାକୁ ବାହାରିଲେ । ରାତିବେଳ । ବାଟରେ ଘନ ଜଙ୍ଗଲ । ବାଘଭାଲୁଙ୍କ ଭୟ । କୌଣସି କଥାକୁ ଭୟ ନକରି ସେ ଚାଲିଲେ ।

ଲକ୍ଷ୍ମଣ ବହୁ କଷ୍ଟ ସହି ଜୟପୁରରେ ପହଞ୍ଚିଲେ । ସେଠାରେ ସେ ଜାଣିବାକୁ ପାଇଲେ ଯେ ସେଦିନର ଗୋଳମାଳରେ ମାତିଲିର ଜଙ୍ଗଲ ଜଗୁଆଳୀ ମରିଛି । ତାକୁ ମାରିଦେଇଥିବା ଅଭିଯୋଗରେ ଲକ୍ଷ୍ମଣଙ୍କୁ ପୁଲିସ ଗିରଫ କରିବାକୁ ଖୋଜୁଛି । ଏପରି ଗୋଟାଏ ମିଛ କଥା ପାଇଁ ସେ ପୁଲିସ ହାତରେ ବନ୍ଦୀ ନହୋଇ ବାହାରେ ରହିବା ଉଚିତ ମନେକଲେ, କାରଣ ତାଙ୍କଦ୍ୱାରା ଦେଶପାଇଁ ଅନେକ

କାମ କରିବାକୁ ଅଛି। ସେଠୁ ଯାଇ ସେ ନିଜ ଗାଁ ପାଖ ପାହାଡ଼ରେ ଲୁଚି ରହିଲେ। ମାତ୍ର ତାଙ୍କୁ ଖୋଜିବାକୁ ଆସି ଗାଁର ନିରୀହ ଲୋକଙ୍କୁ ପୁଲିସମାନେ ବଡ଼ ହଇରାଣ କରୁଥିଲେ। ଲୋକଙ୍କର ଏ ଦୁଃଖ ଦେଖି ସେ ଗାଁକୁ ଫେରିଆସିଲେ ଓ ପୁଲିସକୁ ଧରାଦେଲେ।

ପ୍ରଥମେ ତାଙ୍କୁ କୋରାପୁଟ ଜେଲ୍‌ରେ ରଖାଗଲା। ତାଙ୍କ ବିରୁଦ୍ଧରେ ନରହତ୍ୟା ଅଭିଯୋଗରେ କଚେରିରେ ବିଚାର ହେଲା। କେତେଜଣ ସରକାରୀ ଲୋକ ଓ ସରକାରୀ ଠିକାଦାର ତାଙ୍କ ବିରୁଦ୍ଧରେ ମିଛ ସାକ୍ଷୀ ଦେଲେ। ବିଚାରପତି ଆଦେଶ ଦେଲେ– ଲକ୍ଷ୍ମଣ ନାୟକ ମଣିଷ ମାରିଛନ୍ତି– ସେ ଫାଶୀ ଦଣ୍ଡ ପାଇବେ।

୧୯୪୩ ମସିହା ମାର୍ଚ୍ଚମାସ ୨୯ ତାରିଖ ସକାଳେ ତାଙ୍କୁ ଫାଶୀ ଦିଆଯିବ ବୋଲି ସରକାର ଘୋଷଣା କରିଦେଲା। ଏଥିପାଇଁ ତାଙ୍କୁ ବ୍ରହ୍ମପୁର ଜେଲ୍‌କୁ ଅଣାଗଲା।

ଠିକ୍ ବଡ଼ିଭୋର ସମୟରେ ଲକ୍ଷ୍ମଣଙ୍କୁ ଫାଶୀଖୁଣ୍ଟ ନିକଟକୁ ନିଆଗଲା। ବେକରେ ଫାଶି ଗଳାଇଦିଆଗଲା। ତାଙ୍କୁ ତାଙ୍କର ଶେଷ କଥା ପଚାରିବାରୁ ସେ କହିଥିଲେ– "ଯଦି ସୂର୍ଯ୍ୟ ଚନ୍ଦ୍ର ଅଛି, ତେବେ ଦେଖିବ ଭାରତକୁ ସ୍ୱରାଜ ଆସିବ।" ତା'ପରେ ବୀର ଲକ୍ଷ୍ମଣନାୟକ ହସିହସି ଫାଶୀଖୁଣ୍ଟରେ ଝୁଲିପଡ଼ିଥିଲେ।

ଏକ ମହାନ୍ ସ୍ୱାଧୀନତା ସଂଗ୍ରାମୀ, ଡରଭୟ ନଥିବା ପରୋପକାରୀ ମଣିଷ ଦେଶ ପାଇଁ ଫାଶୀପାଇଲେ। ତାଙ୍କ ମୃତ୍ୟୁର ମାତ୍ର ଚାରିବର୍ଷ ପରେ ଦେଶ ସ୍ୱାଧୀନ ହେଲା। ସବୁଠି ତ୍ରିରଙ୍ଗା ପତାକା ଉଡ଼ିଲା। ବୀର ଲକ୍ଷ୍ମଣନାୟକଙ୍କର ସ୍ୱପ୍ନ ସଫଳ ହେଲା।

□ □ □